॥ ଶ୍ରୀହରିଃ ଶରଣମ୍ ॥

# ପ୍ରାର୍ଥନା

**प्रार्थना ( ओड़िआ )**

| | | | | |
|---|---|---|---|---|
| ତ୍ୱମେବ | ମାତା | ଚ | ପିତା | ତ୍ୱମେବ |
| ତ୍ୱମେବ | ବନ୍ଧୁଶ୍ଚ | ସଖା | ତ୍ୱମେବ । | |
| ତ୍ୱମେବ | ବିଦ୍ୟା | ଦ୍ରବିଣଂ | ତ୍ୱମେବ | |
| ତ୍ୱମେବ | ସର୍ବଂ | ମମ | ଦେବଦେବ ॥ | |

ଲେଖକ : **ହନୁମାନପ୍ରସାଦ ପୋଦ୍ଦାର**
ଓଡ଼ିଆ ଭାଷାନ୍ତର : **ନରସିଂହ ନନ୍ଦ**

**ଗୀତାପ୍ରେସ, ଗୋରଖପୁର**

॥ ଶ୍ରୀହରିଃ ॥

# ପ୍ରାର୍ଥନା ପରିଚୟ

ପ୍ରାର୍ଥନା ମନ ଭିତରର କଥା । ଏଥିପାଇଁ କୌଣସି ଧରାବନ୍ଧା ନିୟମ, ବ୍ୟାକରଣଗତ ଶୁଦ୍ଧି ବା ଅଶୁଦ୍ଧି, ଛନ୍ଦ-ସ୍ୱର ବା କବିତାର ଅନିବାର୍ଯ୍ୟତା ନାହିଁ। ପ୍ରଗାଢ଼ ବିଶ୍ୱାସ ସହିତ ନିଜର ପ୍ରିୟ ପ୍ରଭୁଙ୍କ ନିକଟରେ ନିଜ ଭାଷାରେ ନିଜ ମନର ବାସ୍ତବିକ ସ୍ଥିତି ଅନୁଯାୟୀ ସହଜ ସରଳଭାବେ ଯାହାକିଛି ଆବେଦନ-ନିବେଦନ କରାଯାଏ, ତାହା ହିଁ ପ୍ରାର୍ଥନା। ଜୀବନରେ ଏପରି ପ୍ରାର୍ଥନା ଅସଂଖ୍ୟ ଥର ହୋଇଥାଏ ଏବଂ ହେଉଛି ମଧ୍ୟ। କେବେ ଶବ୍ଦରେ, କେବେ ମୂକ ଭାଷାରେ ଓ କେତେବେଳେ କେବଳ ମନର ସଂକଳ୍ପ ଦ୍ୱାରା। ଏହି ଭିତରୁ ଅଳ୍ପ ବହୁତ ଯାହାକିଛି ଲିପିବଦ୍ଧ ହୋଇ ରହିଛି; ତାହା ଏଠାରେ ମୁଦ୍ରଣ କରାଯାଇଛି। ଏହା ନିଜର ପ୍ରିୟତମ ଭଗବାନଙ୍କ ସହିତ ଅନ୍ତରଙ୍ଗ ଆଳାପ, ଏହା ତର୍କର ବସ୍ତୁ ନୁହେଁ କିମ୍ବା ବିଗ୍ରହର ବସ୍ତୁ ନୁହେଁ, ଅଥବା ଏଥିରେ କିଛି ମନଗଢ଼ା ଲେଖାଯାଇନାହିଁ। ଏହା କେବଳ ମନର ସହଜ ଭାବୋଦ୍‌ଗାର। ଯେତେବେଳେ ମନରେ ଯେଉଁ ଅବସ୍ଥା ହୁଏ, ସେହିପରି ଏଥିରେ ପ୍ରକାଶ ହୋଇଛି । ଏଥିରେ ପୂର୍ବାପର ସମ୍ବନ୍ଧ ବା ଧାରାବାହିକତାର ପ୍ରଶ୍ନ ଉଠୁନାହିଁ। ଯାହାକିଛି ଅଛି, ତାହା ସତ୍ୟ ଏବଂ ଯଥାର୍ଥ। ଏହି ପ୍ରାର୍ଥନାଗୁଡ଼ିକ ଯଦି କାହା ଜୀବନରେ, ଜୀବନର ସମସ୍ୟା ସମାଧାନରେ, ଦୁଃଖ-ଚିନ୍ତା ଦୂର କରିବାରେ, ଲକ୍ଷ୍ୟ ପ୍ରାପ୍ତି ଦିଗରେ, ମାର୍ଗ ଦର୍ଶନ କରିବାରେ କିଛିଟା ସହାୟକ ହୋଇପାରିବ, ତେବେ ଅତି ଆନନ୍ଦର କଥା।

—କେହି ଜଣେ

**ପରମ କାରୁଣିକୋ ନ ଭବତ୍ପରଃ**
**ପରମଶୋଚ୍ୟତମୋ ନ ଚ ମତ୍ପରଃ ।**
**ଇତି ବିଚିନ୍ତ୍ୟ ହରେ ମୟି ପାମରେ**
**ଯଦୁଚିତଂ ଯଦୁନାଥ ତଦାଚର ॥**

''ହେ ହରି ! ତୁମଠୁ ବଳି ପରମକାରୁଣିକ ଆଉ କେହି ନାହିଁ ଏବଂ ମୋଠାରୁ ବଳି ପରମ ଶୋଚନୀୟ ଆଉ କେହି ନାହିଁ। ହେ ଯଦୁନାଥ! ଏହା ବୁଝି ମୋପରି ପାମର ପାଇଁ ଯାହା ଉଚିତ ତାହା କର ।''

॥ ଶ୍ରୀହରିଃ ॥

# ପ୍ରାର୍ଥନା

## (୧)

ହେ ପ୍ରଭୁ !

ମୁଁ ଅଧମ, ନୀଚ, ପାମର, ପାପକାଳିମାରେ କଳଙ୍କିତ । ଏସବୁ ସତ୍ତ୍ୱେ ବି ମୁଁ ତୁମର ନା ? ହେ ସତ୍ୟ ! ଏହି ସତ୍ୟକୁ ତୁମେ ଅସ୍ୱୀକାର କରିପାରିବ ନାହିଁ । ବାସ୍, ଏହି ସତ୍ୟକୁ ଆଧାରିତ କରି ମୁଁ ତୁମକୁ ପ୍ରାର୍ଥନା କରୁଛି, 'ତୁମେ ମୋ ମନକୁ ଏପରି କରିଦିଅ, ଯଦ୍ଦ୍ୱାରା ମୁଁ ଏହି ସତ୍ୟକୁ ସଦା-ସର୍ବଦା ଯେପରି ସ୍ମରଣ ରଖେ ।' ହେ ପତିତପାବନ ! ଏ ପତିତର ଏତିକି ବିନତି କ'ଣ ଶୁଣିବ ନାହିଁ ?

卐 卐 卐 卐

ହେ ପ୍ରଭୁ ! ମୁଁ ତୁମପ୍ରତି ବିମୁଖ । ସଂସାର ଜାଲରେ ପଡ଼ି ଭୁଲରେ ବି କେବେ ତୁମପ୍ରତି ମୋ ଚିତ୍ତ ସଂଯୁକ୍ତ କରିପାରୁନି । ତଥାପି ହେ ବିଶ୍ୱରୂପ! ହେ ମୋର ଲୀଳାମୟ ପ୍ରଭୁ ! ତୁମେ ଯେ ସବୁକିଛି, ଏହା ତ ଅକାଟ୍ୟ ସତ୍ୟ । ତେଣୁ ମୁଁ ଯୁଆଡ଼େ ବି ଦେଖେ, ଯେଉଁଆଡ଼େ ବି ଯାଏ, ଯେଉଁଥିରେ ବି ମନ ଲଗାଏ, ସେଠାରେ କେବଳ ତୁମକୁ ହିଁ ଦେଖୁଛି, ତୁମରି ଆଡ଼େ ଯାଉଛି, ତୁମଠାରେ ହିଁ ମନ ଲଗାଇଛି—ଏହି ଚିନ୍ତା ଯେପରି ପ୍ରତି ମୁହୂର୍ତ୍ତରେ ମୋ ହୃଦୟରେ ଜାଗିରହୁ—ହେ ସ୍ୱାମୀ ! ଏତିକି ମୋର ପ୍ରାର୍ଥନା ।

卐 卐 卐 卐

ହେ ପ୍ରଭୁ ! ମୁଁ ମୋର ବୃଥା ଅହମିକାରେ ବାନ୍ଧିହୋଇ ନିଜକୁ ବଳବାନ୍, ଧନବାନ୍, ସମ୍ପତ୍ତିବାନ୍, ଜନବାନ୍, ବିଦ୍ୱାନ୍ ଓ ବୁଦ୍ଧିମାନ୍ ବୋଲି ଭାବୁଛି । କିନ୍ତୁ ହେ ସର୍ବେଶ୍ୱର ! ଏହା ସତ୍ୟ ଯେ, ମୋର ଯାହାକିଛି ଅଛି, ତାହା ସବୁ ତୁମର । ମୁଁ ମଧ୍ୟ ତୁମରି ସମ୍ପତ୍ତି । ହେ ସର୍ବଲୋକମହେଶ୍ୱର ! ଏହି ସତ୍ୟ ସିଦ୍ଧାନ୍ତକୁ ଯେପରି ମୁଁ କେବେ ବି ନ ଭୁଲେ, ହେ ମାଲିକ ! ଏହି ବର ଦିଅନ୍ତୁ ।

卐 卐 卐 卐

ହେ ପ୍ରଭୁ ! ଲୋକେ କୁହନ୍ତି, 'ଏହି ଜଗତ ସ୍ୱପ୍ନବତ୍, ଏହି ଜଗତରେ ଯାହାକିଛି ଦେଖାଯାଉଛି, ତାହା ସବୁ ତୁମରି ମାୟା', କିନ୍ତୁ ମାୟା ବା ସ୍ୱପ୍ନ ପୁରୁଷର ଆଶ୍ରିତ ହୋଇଥିବା ଯୋଗୁଁ, ହେ ସତ୍ୟ ସଙ୍କଳ୍ପ ! ଏହା କ'ଣ ସତ୍ୟ ନୁହେଁ ଯେ, ଏହି ସାରା ପ୍ରପଞ୍ଚ ବା ଜଗତ କେବଳ ତୁମ ସଙ୍କଳ୍ପରେ ହିଁ ସ୍ଥିତ । ସେହି ପ୍ରପଞ୍ଚ ଭିତରେ ମୁଁ ରହିଛି, ତେଣୁ ମୁଁ ମଧ୍ୟ ତୁମ ସଙ୍କଳ୍ପ ଭିତରେ ଅଛି ।

ତେବେ ପୁଣି ମୋ’ ପରି ଭାଗ୍ୟବାନ ଆଉ କିଏ ହୋଇପାରିବ, ଯାହାକୁ ତୁମେ ତୁମ ମନ ଭିତରେ ରଖିଛ । ତେବେ ପ୍ରଭୁ ! ମୋତେ ତୁମ ସଙ୍କଳ୍ପ ଭିତରେ ରଖି ଏପରି କରିଦିଅ ଯେ, ମୁଁ ଯେପରି ସବୁକିଛି ଭୁଲି, ଦୁନିଆର ସମସ୍ତ ସ୍ଥିତିକୁ ଭୁଲି, କେବଳ ଏତିକି ମନେରଖେ, ‘ମୁଁ ତୁମ ସଙ୍କଳ୍ପରେ ହିଁ ସ୍ଥିତ ।’

卐 卐 卐 卐

ହେ ପ୍ରଭୁ ! ମୋ ପରି କ୍ଷୁଦ୍ର ପରିଧିରେ ରହିଥିବା କ୍ଷୁଦ୍ରତମ କୀଟ କେଉଁଠି, ଆଉ ତୁମପରି ପ୍ରତି ରୋମରେ ଅନନ୍ତ ବ୍ରହ୍ମାଣ୍ଡ ଧାରଣ କରିଥିବା କଳ୍ପନାତୀତ ମହାମହିମ ମହାନ୍ ପ୍ରଭୁ କେଉଁଠି ? ମୁଁ ତୁମ ଥଳକୂଳ କେଉଁଠୁ କିପରି ଅବା ପାଇପାରିବି ? ତଥାପି ହେ ସର୍ବାଧାର ! ଏହା ନିଶ୍ଚିତ ଭାବେ ସତ୍ୟ ଯେ, ଅନନ୍ତ ବ୍ରହ୍ମାଣ୍ଡମାନଙ୍କ ଭିତରେ କୌଣସି ଏକ କ୍ଷୁଦ୍ରତମ ବ୍ରହ୍ମାଣ୍ଡର କ୍ଷୁଦ୍ରତମ କୀଟଟିଏ ହେଲେ ମଧ୍ୟ ତୁମେ ମୋତେ ଧାରଣ କରିଛ । ପ୍ରଭୁ ! ଏହି ତତ୍ତ୍ୱକୁ ଯେପରି ମୁଁ କେବେ ବି ଭୁଲି ନ ଯାଏ ଏବଂ ସଦାସର୍ବଦା ନିଜକୁ ତୁମରି ଆଧାର ଉପରେ ସ୍ଥିତ ବୋଲି ଦେଖିପାରେ ଏବଂ ତୁମ ଭିତରେ ମୁଁ ଅଛି ବୋଲି ଅନୁଭବ କରେ ।

卐 卐 卐 卐

ହେ ପ୍ରଭୁ ! ମୁଁ ଦୁଃଖରେ ଭାରାକ୍ରାନ୍ତ, ତାପରେ ସଂତପ୍ତ, ଅଭାବରେ ଆକୁଳିତ, ଅବ୍ୟବସ୍ଥାରେ ବ୍ୟାକୁଳିତ, ଅପମାନରେ ପୀଡ଼ିତ, ଅପକୀର୍ତ୍ତିରେ କଳଙ୍କିତ, ବ୍ୟାଧିଗ୍ରସ୍ତ ଏବଂ ଭୟତ୍ରସ୍ତ । ମୋ ପରି ଦୁଃଖୀ ଦୁନିଆଁରେ କିଏ କେଉଁଠି ଅଛି ? ଦୁଃଖର ପାହାଡ଼ ମୋ ଉପରେ ଲଦି ହୋଇ ପଡ଼ିଛି । ତଥାପି ହେ ମୋର ପ୍ରିୟତମ ! ଏହା କ’ଣ ସତ୍ୟ ନୁହେଁ ଯେ, ‘ଏସବୁ ତୁମ ଦ୍ୱାରା ପ୍ରେରିତ ପ୍ରେମର ଉପହାର ?’ ଏହି ସତ୍ୟକୁ ବୁଝି ମଧ୍ୟ, ହେ ମୋର ପ୍ରିୟତମ ! ମୋତେ ଏସବୁ ଗ୍ରହଣ କରିବାରେ ମନରେ ଅସନ୍ତୋଷ ସୃଷ୍ଟି ହେଉଛି କାହିଁକି ? ହେ ମୋର ହୃଦୟଧନ ! ତୁମେ ଦେଇଥିବା ପ୍ରତ୍ୟେକ ବସ୍ତୁରେ ତୁମ ହୃଦୟର ନିର୍ମଳ ପ୍ରେମକୁ ଦେଖି, ତୁମର ପ୍ରତ୍ୟେକ ବିଧାନରେ ତୁମର କୋମଳ କରସ୍ପର୍ଶ ପାଇ ମୁଁ ଯେପରି ପରମ ସୁଖୀ ହୋଇଯିବି, ସେହିପରି ପ୍ରେମୀଙ୍କର ଅତୁଳନୀୟ ହୃଦୟ ମୋତେ ପ୍ରଦାନ କରନ୍ତୁ ନାଥ !

卐 卐 卐 卐

ହେ ପ୍ରଭୁ ! ମୁଁ ଦିନରାତି ଦୁନିଆଁର ଦୁଃଖ, ଶୋକ, ପୀଡ଼ା, ନିରାଶା, ଅସଫଳତା, ଅପମାନ, ଅକାଳ, ଅକୀର୍ତ୍ତି, ଦାରିଦ୍ର୍ୟ, ବିୟୋଗ, ରୋଗ ଓ ମୃତ୍ୟୁର ଭୟଙ୍କର ଚେହେରା ଦେଖି ଭୟଭୀତ ହୋଇଯାଉଛି । କିନ୍ତୁ, ହେ

ଚତୁର ଖେଳାଳି ! ହେ ମୋର ଅତୁଳନୀୟ ବହୁରୂପୀ ! ଏହା କ'ଣ ସତ୍ୟ ନୁହେଁ ଯେ, ଏଇ ସମସ୍ତ ରୂପ ଧାରଣ କରି ଏକମାତ୍ର ତୁମେ ହିଁ ମୋ ସହିତ ଖେଳିବାକୁ ଆସୁଛ ? ଆଉ ମଧ୍ୟ ଏହା କ'ଣ ସତ୍ୟ ନୁହେଁ ଯେ, ମୁଁ ତୁମକୁ ଚିହ୍ନି ନ ପାରି ଡରିକରି ସେ ସବୁଥିରୁ ନିସ୍ତାର ପାଇଁ ଦୂରକୁ ପଳାଇବା ପାଇଁ ଚାହୁଁଛି ? ହେ ପ୍ରିୟ ! ମୋତେ ଏପରି ଦିବ୍ୟ ଆଖି ଦିଅ, ଯଦ୍ଦ୍ୱାରା ମୁଁ ତୁମକୁ ଚିହ୍ନିବାରେ କେବେ ବି ଭୁଲ ନ କରେ । ତୁମେ ଯେପରି ଇଚ୍ଛା ସେପରି ରୂପରେ ଆସିଲେ ସୁଦ୍ଧା ତୁମକୁ ମୁଁ ଯେପରି ଚିହ୍ନିପାରିବି ଏବଂ ତୁମର ନୂଆ-ନୂଆ ଖେଳକୁ ଦେଖି-ଦେଖି ସେହିପରି ପ୍ରଫୁଲ୍ଲିତ ହୋଇଯିବି, ଯେପରି ସୂର୍ଯ୍ୟକିରଣକୁ ଦେଖିଲା ମାତ୍ରେ ପଦ୍ମ ଫୁଟି ଉଠେ । ଏଇ ପରଦା ଭିତରର ବସ୍ତୁଗୁଡ଼ିକୁ ଚିହ୍ନିବାପାଇଁ ମୋତେ ସୂକ୍ଷ୍ମ ଦୃଷ୍ଟି ପ୍ରଦାନ କରିଦେବେ ନା ପ୍ରଭୁ ?

卐 卐 卐 卐

ହେ ପ୍ରଭୁ ! ମୁଁ ମାତାଙ୍କ ସ୍ନେହରେ, ପିତାଙ୍କ ବାତ୍ସଲ୍ୟରେ, ବନ୍ଧୁମାନଙ୍କର ମିତ୍ରତାରେ, ପତ୍ନୀ ପ୍ରେମରେ, ସନ୍ତାନମାନଙ୍କ ପ୍ରୀତିରେ, ସୁକର୍ମର କୀର୍ତ୍ତିରେ ଏବଂ ଲକ୍ଷ୍ମୀଙ୍କ ମୋହିନୀ ଶକ୍ତିରେ ମୁଗ୍ଧ ହେଉଛି । ମୁଁ ଏସବୁରେ ସଦା-ସର୍ବଦା ଅନ୍ଧ ହୋଇଯାଉଛି, କିନ୍ତୁ ହେ ମୋର ମାୟାବୀ ପ୍ରଭୁ ! ଏହା କ'ଣ ସତ୍ୟ ନୁହେଁ ଯେ, ତୁମେ ହିଁ ମାଆ ହୋଇ ସ୍ନେହ ଦେଉଛ, ବାପା ହୋଇ ପାଳୁଛ, ମିତ୍ର ହୋଇ ମୈତ୍ରୀ ପ୍ରଦାନ କରୁଛ, ପତ୍ନୀ ହୋଇ ପ୍ରେମ କରୁଛ, ସନ୍ତାନରୂପେ ତୁମେ କୋମଳ ବଚନରେ ମୁଗ୍‌ଧ କରୁଛ, ସୁକର୍ମ ସ୍ୱରୂପରେ କୀର୍ତ୍ତି ଭାବେ ଆସୁଛ ଏବଂ ମା' ଲକ୍ଷ୍ମୀ ସ୍ୱରୂପରେ ମୋତେ ଗୋଲାମ କରିରଖିଛ ? ଏଇ ସ୍ନେହ, ବାତ୍ସଲ୍ୟ ଆଦି ସମସ୍ତ ଧାରର ମୂଳସ୍ରୋତ ତୁମର ଅଖିଳ ଭାବ-ମହାସାଗରରୁ ଉତ୍ପତ୍ତି ନୁହେଁ କି ? ପୁଣି ଏହିସବୁ ଭାବଧାରା ପୁନର୍ବାର ଫେରି ସେହି ମହାସମୁଦ୍ରରେ ଲୀନ ହୋଇଯାଉନାହିଁ କି ? ବେଶ୍, ଏତିକି କୃପା କର ପ୍ରଭୁ ! ଯେପରି ମୁଁ ଏଇ ସବୁରେ ଏବଂ ଏ ସମସ୍ତଙ୍କ ସମ୍ବନ୍ଧ ଓ ଭାବ ମଧ୍ୟରେ ତୁମକୁ ହିଁ ଦେଖି-ଦେଖି ସର୍ବଦା ମୁଗ୍‌ଧ ହେଉଥିବି ।

卐 卐 卐 卐

ହେ ପ୍ରଭୁ ! ବଗିଚାର ରଙ୍ଗ-ବେରଙ୍ଗ ଫୁଲମାନଙ୍କର ସୌନ୍ଦର୍ଯ୍ୟ ଓ ସୁଗନ୍ଧ, ଆକାଶରେ ଉଡ଼ିଯାଉଥିବା ପକ୍ଷୀମାନଙ୍କର ବିଚିତ୍ର ବର୍ଣ୍ଣ ଓ ସୁମଧୁର କାକୋଳି, ସରୋବର ଓ ନଦୀମାନଙ୍କରେ ସ୍ୱଚ୍ଛନ୍ଦରେ ପହଁରୁଥିବା ମାଛମାନଙ୍କର ସୁନ୍ଦର ରୂପ, ଫୁଲରୁ ମହୁ ଶୋଷିବା ପାଇଁ ଘୂରି ବୁଲୁଥିବା ପ୍ରଜାପତିମାନଙ୍କର

କଳାପୂର୍ଣ୍ଣ ସୁନ୍ଦର ପର—ଏସବୁ ମନ ମୁଗ୍‌ଧ କରୁଛି । ହେ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟର ଅନନ୍ତସାଗର ! ଏ ସମସ୍ତଙ୍କ ସୌନ୍ଦର୍ଯ୍ୟ, ସୌରଭ, କଳା ଏବଂ ମଧୁରସ୍ୱର କେବଳ ତୁମର ଜଳବିନ୍ଦୁ ସ୍ୱରୂପ । ହେ ଅଖିଳ ସୌନ୍ଦର୍ଯ୍ୟନିଧି ! ଏତିକି କୃପା କର, ଯେପରି ମୁଁ ଏହାକୁ ସଦାସର୍ବଦା ସ୍ମରଣ କରିପାରେ ଏବଂ ପ୍ରତ୍ୟେକ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟର ପ୍ରବହମାନ ଧାରାର ସାହାଯ୍ୟ ନେଇ ତୁମର ଅନନ୍ତ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟର କିଛି ଅଂଶକୁ ଉପଭୋଗ କରେ ।

卐 卐 卐 卐

ହେ ପ୍ରଭୁ ! ମୋ ହୃଦୟରେ ଏପରି ଅଗ୍ନି ସଂଯୋଗ କରିଦିଅ, ଯାହା ସଦା-ସର୍ବଦା ହୁ-ହୁ ହୋଇ ବଢ଼ି ସମଗ୍ର ବିଷୟ ଆସକ୍ତି ଓ କାମନାକୁ ଇନ୍ଧନ ରୂପେ ବ୍ୟବହାର କରି ଅଧିକ ପ୍ରଚଣ୍ଡ ଭାବେ ଜଳୁ । ଏହି ପ୍ରବଳ ପ୍ରଚଣ୍ଡ ଅଗ୍ନି ତୁମ ଦର୍ଶନ-ସୁଧା-ବୃଷ୍ଟି ନ ପାଇବା ପର୍ଯ୍ୟନ୍ତ ଶାନ୍ତ ନ ହେଉ ।

卐 卐 卐 卐

ହେ ପ୍ରଭୁ ! ଯେପରି ସୂର୍ଯ୍ୟକାନ୍ତମଣି ସୂର୍ଯ୍ୟକିରଣର ସ୍ପର୍ଶ ପାଇବାମାତ୍ରେ ଜଳି ଉଠେ, ସେହିପରି ହେ ନାଥ ! ତୁମ ଭକ୍ତ ସାଧୁସନ୍ଥମାନଙ୍କର ଜ୍ଞାତ ବା ଅଜ୍ଞାତରେ, ସଙ୍ଗ ଲାଭ କରି ମୋ ମନରେ ତୁମ ପ୍ରେମର ଅଗ୍ନି ଜଳି ଉଠୁ । ହେ ଅନନ୍ତ ବ୍ରହ୍ମାଣ୍ଡର ଅନନ୍ତ ସୂର୍ଯ୍ୟଙ୍କ ପ୍ରକାଶକ ପ୍ରଭୁ ! ମୋ ମନକୁ ସୂର୍ଯ୍ୟକାନ୍ତମଣି ସଦୃଶ କରିଦିଅ ।

ହେ ପ୍ରଭୁ ! ଯେପରି ଚନ୍ଦ୍ରକାନ୍ତମଣି ଚନ୍ଦ୍ରକିରଣ ସ୍ପର୍ଶରେ ଦ୍ରବୀଭୂତ ହୋଇ ତରଳି ଯାଏ, ସେହିପରି ହେ ଅନନ୍ତ ସୁଧାକରଙ୍କୁ ସୁଧା ପ୍ରଦାନ କରୁଥିବା ସୁଧାସାଗର ! ମୋ ହୃଦୟକୁ ଚନ୍ଦ୍ରକାନ୍ତମଣି ସଦୃଶ କରିଦିଅ, ଯାହା ତୁମ ନାମ-ଗୁଣ-ଲୀଳାରୂପୀ ସୁଧାଭରା ଶଶୀକିରଣ ସଂଯୋଗ ପାଇବା ମାତ୍ରେ ଦ୍ରବିତ ହୋଇ ବହିବାକୁ ଲାଗିବ ।

卐 卐 卐 卐

ହେ ପ୍ରଭୁ ! ଚୁମ୍ବକ ସେହି ଲୁହାକୁ ଆକୃଷ୍ଟ କରେ, ଯାହା ନିଷ୍କଳଙ୍କ ଭାବେ ତା’ ସମ୍ମୁଖରେ ଉପସ୍ଥିତ ହୁଏ । ହେ କୃପାସାଗର ! ମୋତେ ମଧ୍ୟ ଅଭିମାନର କଳଙ୍କରୁ ରହିତ କରି ନିଷ୍କଳଙ୍କିତ ଲୁହା କରିଦିଅ, ଯାହାଦ୍ୱାରା ତୁମରି ଆକର୍ଷକ କୃଷ୍ଣନାମ-ଚୁମ୍ବକ ପାଇବା ମାତ୍ରେ ଦୌଡ଼ି-ଦୌଡ଼ି ସେଥିରେ ଲାଗି ରହିବି ।



ଦୟାମୟ!

ସଂସାରରେ ସୁଖୀ ହେବାପାଇଁ ମୁଁ କ'ଣ ନ କରିଛି ! ବିବାହ କରି ସନ୍ତାନ ଜନ୍ମଦେଲି, ଧନ ରୋଜଗାର କଲି, ଯଶକୀର୍ତ୍ତି ଅର୍ଜନ ପାଇଁ ଅନେକ ଚେଷ୍ଟା କଲି, ଲୋକମାନଙ୍କ ସହିତ ପ୍ରେମ ସମ୍ପର୍କ ବଢ଼ାଇବାକୁ ଇଚ୍ଛା କଲି ଏବଂ ଆଉ ଏମିତି ଅନେକ କିଛି ଅନୁଭବ କଲି; କିନ୍ତୁ ସତ କହୁଛି, ହେ ମୋର ସ୍ୱାମୀ ! ଯେତିକି ଯେତିକି ସୁଖ ପାଇଁ ପ୍ରଯତ୍ନ କଲି, ପରିଣାମସ୍ୱରୂପ ସେତିକି-ସେତିକି ଦୁଃଖ କଷ୍ଟ ପାଇଲି । ଯେଉଁଠି ମନ ସଂଲଗ୍ନ କଲି, ସେଇଠାରୁ ପ୍ରତାରିତ ହେଲି, କେଉଁଠି ହେଲେ ଆଶା ଫଳବତୀ ହୋଇପାରିଲା ନାହିଁ । ଚିନ୍ତା, ଭୟ, ନିରାଶା ଓ ବିଷାଦ ବଢ଼ିଗ୍ଲିଲା । କେଉଁଆଡ଼େ ଯିବି ବାଟ ମିଳିଲା ନାହିଁ । ସବୁ ରାସ୍ତା ବନ୍ଦ ହୋଇଗଲା ।

ତୁମେ କୃପା କଲ, ତୁମ କୃପାରୁ ବୁଝିପାରିଲି ଯେ, ତୁମ ଅଭୟ ଚରଣର ଆଶ୍ରୟ ଛାଡ଼ି ଆଉ କେଉଁଠି ବାସ୍ତବ ଏବଂ ସ୍ଥାୟୀ ସୁଖ ନାହିଁ । ଚରଣ ଆଶ୍ରୟ ପ୍ରାପ୍ତ କରିବାକୁ କିଛି ପ୍ରଯତ୍ନ ମଧ୍ୟ କଲି । ଏବେ ମଧ୍ୟ ପ୍ରଯତ୍ନଶୀଳ ରହିଛି ଏବଂ ସତ କଥା ଯେ, ଏଥିରେ ସୁଖ-ଶାନ୍ତି ଏବଂ ଆରାମ ମଧ୍ୟ ମିଳୁଛି । ମାତ୍ର ହେ ପ୍ରଭୁ ! ପୂର୍ବ ଅଭ୍ୟାସବଶତଃ ବାରମ୍ବାର ଏହି ଚଗଲା ମନ ବିଷୟଭୋଗ ପ୍ରତି ଆକୃଷ୍ଟ ହୋଇଯାଉଛି । ପ୍ରତିରୋଧ କରିବା ପାଇଁ ଚେଷ୍ଟା କରୁଛି, କେବେ-କେବେ ପ୍ରତିରୋଧ ବି କରୁଛି, ତଥାପି ଅଭ୍ୟାସ ଛାଡ଼ି ହେଉନାହିଁ । ତୁମ ଶ୍ରୀଚରଣ ବିନା ସର୍ବତ୍ର କେବଳ ଭୟ ଲାଗିରହିଛି, ଦୁଃଖସାଗର ଲହଡ଼ି ଭାଙ୍ଗୁଛି, ଏ ସମସ୍ତ ଜାଣି, ବୁଝି, ଦେଖି ମଧ୍ୟ ମନ ତୁମକୁ ଛାଡ଼ି ଅନ୍ୟ ଆଡ଼େ ଦୌଡ଼ିବାର ଅଭ୍ୟାସଟିକୁ ପାସୋରି ପାରୁ ନାହିଁ । ଏହାଠାରୁ ବଳି ନୀଚତା ଆଉ କ'ଣ ହୋଇପାରେ, ଦୟାମୟ ସ୍ୱାମୀ !

ତୁମେ ଦୟାଳୁ ମୋ ଆଡ଼କୁ ନ ଗ୍ୱହିଁ, ବରଂ ମୋର ଏଇ ଦୁଷ୍ଟ ମନକୁ କୃପା ଦ୍ୱାରା ତୁମ ଆଡ଼କୁ ଟାଣି ନିଅ ପ୍ରଭୁ ! ମୋ ମନକୁ ଏପରି ଜୋର କରି ବାନ୍ଧିଦିଅ, ଯେପରି ସେ ଆଉ କେବି ବି ଅନ୍ୟ କୁଆଡ଼େ ଯାଇପାରିବ ନାହିଁ । ହେ ମୋର ସ୍ୱାମୀ ! ଏହା କେବେ ହେବ ? କେବେ ମୋର ଏହି ଚଞ୍ଚଳ ମନ ତୁମ ଶ୍ରୀଚରଣ ଦର୍ଶନରେ ତଲ୍ଲୀନ ହୋଇ ପାରିବ ? କେବେ ତୁମ ମନୋହର ମୂର୍ତ୍ତି ଦର୍ଶନ କରି ଏ ମନ କୃତାର୍ଥ ହେବ ?

ଆଉ ଡେରି କର ନାହିଁ ଦୟାମୟ ! ଜୀବନ ସନ୍ଧ୍ୟା ନିକଟବର୍ତ୍ତୀ ହୋଇ ଆସୁଛି । ଏହା ପୂର୍ବରୁ ତୁମ ଦିବ୍ୟ ଜ୍ୟୋତିରେ ଜୀବନରେ ନିତ୍ୟ ପ୍ରକାଶ ପ୍ରସାରିତ କରିଦିଅ ପ୍ରଭୁ ! ଏଥିରେ ସମୁଜ୍ଜ୍ୱଳ କରାଇ ତୁମ ଶ୍ରୀମନ୍ଦିରକୁ ନେଇଗ୍ୱଲ ଏବଂ ଚିରଦିନ ସେଇଠି ରହିବାର ସ୍ଥାନ ଦେଇ କୃତାର୍ଥ କର ।



(୩)

ଦୀନବନ୍ଧୁ !

ଏଇ ମନର ବାଞ୍ଛା ପୂର୍ଣ୍ଣ କରିବାକୁ ମୁଁ କ'ଣ ନ କରିଛି ? ସ୍ଥାନେ-ସ୍ଥାନେ ଭ୍ରମଣ କଲି, ଅନେକ ଲୋକଙ୍କ ଦ୍ୱାରସ୍ଥ ହେଲି, ନାନା ପ୍ରକାର ନୂଆ-ନୂଆ ବ୍ୟବସାୟ କଲି, ଯିଏ ଯାହା ବତାଇଲା, ସେହିପରି କରିବାରେ ଲାଗିଲି । ପ୍ରାରବ୍‌ଧର ସଂଯୋଗରୁ ଏବଂ ତୁମ କୃପାରୁ ଯଥା ସମୟରେ ଧନ, ପୁତ୍ର ଓ ମାନ-ସମ୍ମାନ ମଧ୍ୟ ମିଳିଲା । ତଥାପି ସବୁ ବ୍ୟର୍ଥ ! ଏ ମନର ଗୃହିଦା ଆଜି ପର୍ଯ୍ୟନ୍ତ ପୂରଣ ହୋଇ ପାରିଲା ନାହିଁ । ମନ ସେହିପରି ବ୍ୟସ୍ତ, ସେହିପରି ଅଶାନ୍ତ ଏବଂ ସେହିପରି ଚଞ୍ଚଳ ରହିଛି; ବରଂ ଦେଖୁଛି, ତା'ର ଭୋକ ଏତେ ପରିମାଣରେ ବଢ଼ିଯାଇଛି, ସତେ ଯେପରି ସେ ଏପରି ଏକ ବସ୍ତୁ ଖୋଜୁଛି, ଯାହା ସର୍ବଥା ଅଭାବରହିତ ହୋଇଥିବ । ସେହିପରି ବସ୍ତୁଟି ପାଇଲେ ଆଉ କୌଣସି ଜିନିଷ ପ୍ରତି ତାହାର ଆଗ୍ରହ ରହିବ ନାହିଁ । ସନ୍ଥ-ମହାପୁରୁଷଙ୍କ ବଚନ ଅନୁଯାୟୀ ଏପରି ବସ୍ତୁ ତ କେବଳ ତୁମେ ଏବଂ ତୁମ ଶରଣାଗତ ହୋଇ ଶ୍ରଦ୍ଧା-ପ୍ରେମ ସହ ତୁମକୁ ଭଜନ କଲେ ହିଁ ତୁମେ ମିଳିବ । କିନ୍ତୁ ତୁମ ଭଜନ ତ ମୋ ଦ୍ୱାରା ହୋଇପାରୁ ନାହିଁ ! ଭାବୁଛି—ସବୁବେଳେ ତୁମ ଭଜନରେ ଲାଗିରହନ୍ତି, ସଦା-ସର୍ବଦା ତୁମ ନାମ ଗୁଣ କୀର୍ତ୍ତନ ଓ ତୁମ ରୂପମାଧୁରୀର ଧ୍ୟାନ କରନ୍ତି । କିନ୍ତୁ କଣ କହିବି ? ଯେତେବେଳେ ଭଜନ କରିବାକୁ ବସୁଛି, ସେତେବେଳେ କୁଆଡୁ କେତେ ଚିନ୍ତା, କେତେପ୍ରକାର ଭୂତ-ଭବିଷ୍ୟତର ଚିତ୍ର-ବିଚିତ୍ର ଭାବନା ମନରେ ଆସି ପହଞ୍ଚି ଯାଉଛି, ଯଦ୍ଦ୍ୱାରା କ୍ଷଣିକ ପାଇଁ ମଧ୍ୟ ମନ ଶାନ୍ତ ଏବଂ ଏକାଗ୍ର ହୋଇପାରୁ ନାହିଁ । ତତ୍ ସହିତ ବାହାର କର୍ମଗୁଡ଼ିଏ ଆସି ଜୁଟିଯାଉଛି । 'ଏ କର୍ମ ଏତିକିବେଳେ ନ କଲେ ଅଧର୍ମ ହେବ, କର୍ତ୍ତବ୍ୟରେ ଅବହେଳା ହେବ, ନିନ୍ଦା ହେବ, ଆର୍ଥିକ ଓ ସାମାଜିକ ହାନି ଘଟିବ ଆଉ କଲେ ଅମୁକ ଲାଭ ହେବ'

ଇତ୍ୟାଦି...ଇତ୍ୟାଦି ଭୟ ଏବଂ ପ୍ରଲୋଭନ ମଧ୍ୟ ସେତିକିବେଳେ ଆସି ସେସବୁ କର୍ମରେ ଯୋଡ଼ି ହୋଇଯାଉଛନ୍ତି । ଏହିପରି ମନ ଏବଂ ଜ୍ଞାନେନ୍ଦ୍ରିୟମାନଙ୍କ ସମେତ କର୍ମେନ୍ଦ୍ରିୟମାନଙ୍କରେ ମଧ୍ୟ ହଲଚଲ ସୃଷ୍ଟି ହେଉଛି ।

ପ୍ରଭୁ ! ମୁଁ କ'ଣ କରିବି ? କିପରି ବା ତୁମ ଭଜନ କରିବି, କିଛି ବୁଝି ପାରୁନାହିଁ । ହେ ସ୍ୱାମୀ ! ମୁଁ ଦୁର୍ବଳ । ଜାଣୁଛି, ମନ-ଇନ୍ଦ୍ରିୟ ଆତ୍ମାଠାରୁ ବଳବାନ୍ ନୁହନ୍ତି, ତଥାପି ମୁଁ ଆତ୍ମସ୍ୱରୂପ ସମ୍ପର୍କରେ ଅଜ୍ଞାନ ହୋଇଥିବାରୁ ଦବିଯାଉଛି । ଏବେ ଏକମାତ୍ର ତୁମରି କୃପାଶକ୍ତି ହିଁ ମୋର ସହାୟ ! ହେ ମୋର ନାଥ ! ଏପରି ଶକ୍ତି ଦିଅ, ଯଦ୍ଦ୍ୱାରା ତୁମ ବଳରେ; ତୁମ ଅନନ୍ତ ମହିମା, ତୁମ ଅଚିନ୍ତ୍ୟ ସୌହାର୍ଦ୍ଦ, ତୁମ ପ୍ରବଳ ପ୍ରଭାବ ଏବଂ ତୁମ ସହଜ ଦୟାବଳରେ ମୁଁ ଏହି ମନଟିକୁ ଜୟ କରି, ସେ ସମସ୍ତଙ୍କୁ ସବୁ ଦିଗରୁ ସବୁପ୍ରକାରେ କେବଳ ତୁମରି ଭଜନରେ ହିଁ ଲଗାଇ ଦେବି । ଯେପରି ଗଙ୍ଗା ପ୍ରବାହର ଧାରା ସମସ୍ତ ବାଧାବିଘ୍ନକୁ ଚୂର୍ଣ୍ଣ କରି ସମୁଦ୍ର ଅଭିମୁଖେ ଅପ୍ରତିହତ ଭାବେ ପ୍ରବାହିତ ହେଉଛି, ସେହିପରି ଏଇ ମନର ସମସ୍ତ ବୃତ୍ତି ଏକମୁଖୀ ହୋଇ ବିନା ବ୍ୟାଘାତରେ କେବଳ ତୁମରି ଆଡ଼େ ପ୍ରଧାବିତ ହେଉ । ମୁଁ ତୁମରି ହୋଇଯାଏଁ ଏବଂ ତୁମକୁ ଆପଣାର କରି ଧନ୍ୟ ହୁଏ ।



ମଧୁ ଖୋଜି ଖୋଜି ହୋଇଛି ନିରାଶ ସଂସାର କୁସୁମବନେ ।
ସବୁ ରସ ଲାଗେ କ୍ଷାର ଏକା ତୁମ ପାଦ ପଙ୍କଜ ବିହୁନେ ॥
ନକର ଉଛୁର ଆହେ ରମାବର ନିଶି ଆସୁଛି ପାଖେଇ ।
ନିର୍ବାଣ ପୂର୍ବରୁ ଏ ଜୀବନ ଦୀପ ଆଦରେ ନିଅ କୋଳେଇ ॥

# (୪)

ହେ ମୋର ପ୍ରାଣ ପ୍ରିୟତମ !

ଭୋଗରେ ସୁଖ ନାହିଁ, ଏହି ଅନୁଭବ ବାରମ୍ବାର ହେଉଛି, ତଥାପି ମୋ ଦୁଷ୍ଟ ମନ ସେଥିରେ ହିଁ ସୁଖ ଖୋଜୁଛି ଏବଂ ବାରମ୍ବାର ତୁମକୁ ଭୁଲି ତା' ଆଡ଼କୁ ଦୌଡ଼ୁଛି । ମୁଁ ବହୁତ ବୁଝାଇବାକୁ ଚେଷ୍ଟା କରୁଛି, କିନ୍ତୁ ସେ ମାନୁନାହିଁ । ମୁଁ ଚେଷ୍ଟା କରି ହାରିଯାଉଛି । ହେ ମୋର ସ୍ୱାମୀ ! ଏବେ ତୁମେ ତୁମ କୃପାଶକ୍ତିରେ ଏହାକୁ ତୁମ ଚରଣ କମଳକୁ ଟାଣିନିଅ । ମୋତେ ଏପରି କରିଦିଅ ଯେ, ମୁଁ ସବୁ ପ୍ରକାରେ କେବଳ ତୁମରି ହୋଇଯାଏ । ଧନ, ଐଶ୍ୱର୍ଯ୍ୟ, ମାନ ଯାହାକିଛି ତୁମ ପ୍ରତି ଆକୃଷ୍ଟ ହେବାରେ ବାଧା ସୃଷ୍ଟି କରୁଛି, ସେ ସବୁକୁ ବଳହାର କରି ମୋ'ଠାରୁ ଛଡ଼ାଇ ନିଅ । ମୋତେ ବରଂ ରାସ୍ତାକଡ଼ର ଭିକାରି କରିଦିଅ, ବରଂ ସମସ୍ତେ ମୋତେ ତିରସ୍କାର କରନ୍ତୁ, ହେଲେ ତୁମ ବିଷୟକ ପବିତ୍ର ସ୍ମୃତି ମୋତେ ଦେଇଦିଅ । ବାସ୍ ! ମୁଁ ତୁମରି ସ୍ମରଣ, ତୁମ ସ୍ୱରୂପ ଓ ଗୁଣ ଚିନ୍ତନ କରି ନିରନ୍ତର ସଚ୍ଚିଦାନନ୍ଦରେ ନିମଗ୍ନ ରହେ । ମୋ ସୁଖ-ଦୁଃଖ, ହାନି-ଲାଭ ଇତ୍ୟାଦି ସବୁକିଛି ତୁମରି ସ୍ମୃତିରେ ହିଁ ଲୀନ ହୋଇଯାଉ । ସେ ବରଂ ଯେପରି ଭାବେ ଯାଉ-ଆସୁ ପଛେ, କିନ୍ତୁ ମୁଁ ସର୍ବଦା ତୁମ ପ୍ରେମରେ ବୁଡ଼ି ରହିଥାଏ । ସବୁଥିରେ, ସବୁ ଅବସ୍ଥାରେ, ସବୁ ଭାବନାରେ, ସମସ୍ତ କାର୍ଯ୍ୟ-କଳାପରେ ଏବଂ ସମଗ୍ର ସୃଜନ ସଂହାରରେ କେବଳ ତୁମରି ଅନୁଭବ କରେ । ତୁମ ପ୍ରିୟ ପରଶ ପାଇ ସର୍ବଦା ଉଲ୍ଲସିତ ହୋଇ ରହେ । ମୋ ମନରୁ ସବୁକିଛି ଭୁଲାଇ ଦିଅ ଏବଂ ଏକମାତ୍ର ତୁମରି ସୁମଧୁର ସ୍ମୃତିକୁ ହିଁ ଜଗାଇ ଦିଅ । ଏପରି କୌଣସି ମୁହୂର୍ତ୍ତ ନ ରହୁ, ଯେଉଁଥିରେ ମୋ ମନ ତୁମକୁ ଭୁଲିଯିବ । ଯଦି ସମ୍ଭବ ହୁଏ, ତେବେ ମାଛ ଯେପରି ଜଳ ବିନା ଛଟପଟ ହୋଇ ମରିଯାଏ, ସେହିପରି ମୋ ମନର ମୃତ୍ୟୁ ହେଉ ।

ମୋ ପ୍ରାଣ ସର୍ବଦା ତୁମ ସାଥିରେ ରହୁ, ତୁମ ବିଚ୍ଛେଦ କେବେ ବି ନ ହେଉ । ଯଦି କେବେ ଏପରି ହୋଇଯାଏ, ତେବେ ତେଲ ଅଭାବରୁ ଦୀପ ଲିଭିଗଲା ପରି ଶାନ୍ତଭାବେ ତୁମ ସହିତ ଲୀନ ହୋଇଯାଉ ।

ମୁଁ ସର୍ବଦା ଅନୁଭବ କରେଁ, 'ତୁମେ ମୋର ଆଉ ମୁଁ ତୁମର, ତୁମେ ମୋ ସାଥିରେ ଅଛ ଏବଂ ମୁଁ ତୁମ ସାଥିରେ ରହିଛି, ତୁମେ ମୋତେ ଦେଖୁଛ ଆଉ ମୁଁ ତୁମକୁ ଦେଖୁଛି, ତୁମେ ମୋତେ ଧରିଛ ଏବଂ ମୁଁ ତୁମକୁ ଧରିଛି, ତୁମେ ମୋତେ ଆଲିଙ୍ଗନ କରୁଛ ଏବଂ ମୁଁ ତୁମକୁ ଆଲିଙ୍ଗନ କରୁଛି, ତୁମେ ମୋ ଭିତରେ ରହିଛ ଏବଂ ମୁଁ ତୁମ ଭିତରେ ରହିଛି ।'

ମୋ ପ୍ରାଣର ପ୍ରାଣ ! ଆଉ ଡେରି କର ନାହିଁ । ଭ୍ରମି-ଭ୍ରମି ବହୁତ ସମୟ ବିତିଗଲାଣି । ତୁମ ନିଜର ହୋଇ ମୁଁ ଏପରି ଦୁର୍ଦ୍ଦଶା ଭୋଗୁଛି ପ୍ରଭୁ ! ଏସବୁ ଦେଖି ତୁମେ କିପରି ସମ୍ଭାଳି ହୋଇ ରହିଛ ? ଏବେ ତୁରନ୍ତ ଦୟା କରି ତୁମ ପରମ କାରୁଣିକତାର ଅନୁଭବ କରାଇ ଦିଅ, ହେ ମୋର ସ୍ୱାମୀ !



**ସୈକତ ବେଳାରେ ତୋଳିଲି ସଉଧ କଳପନା କମ ଦେଇ ।**
**ନ ଭଜିଲି ଦିନେ ଶ୍ରୀରଙ୍ଗାଚରଣ ଗରବେ ଉନ୍ମତ ହୋଇ ॥**
**ଭାଙ୍ଗିଦେଇ ମୋର ଅଳିକ ସଉଧ ଆହେ କୃପା ରତ୍ନାକର ।**
**ଯାହା ଇଚ୍ଛା ତାହା କର ହରି ମୁହିଁ ଶରଣାଗତ ତୁମର ॥**

ହେ ଅନ୍ତର୍ଯ୍ୟାମୀ !

ମୋ ମନର କୌଣସି ଅବସ୍ଥା ତୁମ ପାଖରେ ଅଛପା ନାହିଁ । ଏ ମନ ବହୁତ କଦର୍ଯ୍ୟ । ଦମ୍ଭ, କ୍ରୋଧ, ବିଷୟାସକ୍ତି, ମମତା, ମାନ, ମଦ, ଲୋଭ ଭଳି ଏପରି କୌଣସି ଦୋଷ ନାହିଁ, ଯାହା ମୋ ମନରେ ବସା ନ ବାନ୍ଧିଛି । ବୁଦ୍ଧି କହୁଛି, ଏସବୁ ଦୋଷଗୁଡ଼ିକ ରଖିବା ଭଲ ନୁହେଁ, ଏମାନେ ଇହଲୋକ ଓ ପରଲୋକକୁ ନଷ୍ଟ କରିଦେବା ପାଇଁ ଅତ୍ୟନ୍ତ ମାରାତ୍ମକ ଶତ୍ରୁ । କିନ୍ତୁ କ'ଣ କରିବି ? ଚେଷ୍ଟା କଲେ ମଧ୍ୟ ଏମାନେ ମୋ ପିଛା ଛାଡ଼ି ଯାଉନାହାଁନ୍ତି । ହେ ସର୍ବଶକ୍ତିମାନ ! ମୁଁ ଏମାନଙ୍କ ପାଖରେ ମୋ ପୁରୁଷାର୍ଥ ଦ୍ୱାରା ନିରାଶ ହୋଇ ତୁମରି ଶରଣାଗତ ହୋଇଛି । ତୁମ ଶକ୍ତି ଅତୁଳନୀୟ । ସବୁବେଳେ ଦୁଃଖ ଦେଉଥିବା ମୋର ଦୋଷ-ଦୁର୍ଗୁଣଗୁଡ଼ିକୁ ବିନାଶ କରି ଏବେ ମୋ ମନକୁ ପବିତ୍ର କରିଦିଅ ମୋର ମାଲିକ ! ଏଇ ଦୋଷ-ଦୁର୍ଗୁଣମାନଙ୍କର ଅତ୍ୟାଚାରରେ ମୁଁ ଛଟପଟ ହୋଇ ମରୁଛି । ମୋତେ ଶୀଘ୍ର ଉଦ୍ଧାର କର ପ୍ରଭୁ !

ଦୀନବନ୍ଧୁ ! ତୁମକୁ ଛାଡ଼ି ଏ ଦୀନହୀନ ଆଉ କାହା ଦୁଆରକୁ ଯିବ ? ଦୀନହୀନ, କାଙ୍ଗାଳ କୁକର୍ମୀମାନଙ୍କ ଉପରେ ସ୍ନେହବାରି ବର୍ଷା କରିବାକୁ ଆଉ ତୁମପରି କିଏ ଅଛି, ଯାହାଙ୍କ କୃପାଶକ୍ତିରେ ସେମାନଙ୍କର ସମସ୍ତ ଦୀନତା, ଦରିଦ୍ରତା, କୁଚେଷ୍ଟା ଓ କୁପ୍ରବୃତ୍ତି ପରିବର୍ତ୍ତିତ ହୋଇ ସେମାନେ ସୁଖୀ, ସମ୍ପନ୍ନ ଓ ସଦାଚାରୀ ହୋଇପାରିବେ । ତୁମକୁ ମୁଁ ଏଇ ଯେଉଁ ପ୍ରାର୍ଥନା କରୁଛି, ଏହା ମଧ୍ୟ ବାସ୍ତବରେ ତୁମର ଦୟା ପ୍ରଭାବକୁ ନ ବୁଝିବାର ହିଁ ପରିଣାମ । ତୁମେ ତ ଅହେତୁକ ଦୟାଳୁ, ମୋ ଉପରେ ତୁମର ଅସୀମ, ଅନନ୍ତ ଦୟା । ମୋଠାରୁ ପ୍ରତିବଦଳରେ କିଛି ବି ନ ପାଇ ତୁମେ ସବୁଦିଗରୁ ସଦା-ସର୍ବଦା ମୋ ଉପରେ ତୁମ କରୁଣାବର୍ଷା କରିଚାଲିଛ । ମୁଁ ଯେପରି ସୁଖୀ ଓ ସଦାଚାରୀ ହୁଏ, ଯେପରି ଶାନ୍ତି ଓ ଆନନ୍ଦ ପାଏ, ତୁମେ ଦିନରାତି ମୋ ପାଇଁ ସେହିପରି କରି ଚାଲିଛ । ଏପର୍ଯ୍ୟନ୍ତ ମୋ ଜୀବନରେ ଘଟିଯାଇଥିବା ଘଟଣାଗୁଡ଼ିକୁ ମନେ ପକାଇଲେ ମୋର ନୀଚତା ଏବଂ ତୁମର ନିତ୍ୟ ନିରନ୍ତର ଅନନ୍ତ କାରୁଣିକତା ଉପରେ

ବିଗ୍ରହ କଲେ, ମୋ ହୃଦୟ କୃତଜ୍ଞତାରେ ପରିପୂର୍ଣ୍ଣ ହୋଇଯାଏ । ମୋ ପରି ଦୁର୍ବିନୀତ, ଦୁର୍ବୁଦ୍ଧି, ଦୁରାଗ୍ରହୀ, ଦୁଷ୍ଟ ପ୍ରକୃତିର ଦରିଦ୍ର କ୍ଷୁଦ୍ର ପ୍ରାଣୀ କେଉଁଠି, ଆଉ ତୁମପରି ମହାମହିମ ସର୍ବଲୋକମହେଶ୍ୱର ସାକ୍ଷାତ୍ ଭଗବାନ କେଉଁଠି ? ତଥାପି ତୁମେ ମୋତେ କେବେ ଭୁଲି ଯାଇନ, କେବେ ମୋ ପାଖ ଛାଡ଼ିନ । ବିପତ୍ତିର ସେହି ମୁହୂର୍ତ୍ତରେ, ଯେତେବେଳେ ସଂସାରରେ ମୋତେ ସହାୟତା କରିବାକୁ କେହି ନ ଥିଲେ, କୁବିଗ୍ରହର ସେହି ଘଡ଼ିସନ୍ଧିବେଳେ, ଯେତେବେଳେ ମୁଁ ପାପ-ପ୍ରବୃତ୍ତିରେ ପଡ଼ି ଅତଳ ନର୍କକୁଣ୍ଡରେ ପଡ଼ିବାକୁ ଯାଉଥିଲି, ତୁମେ କେତେ ବିଚିତ୍ର କୌଶଳରେ, କେତେ ଶୀଘ୍ର ମୋତେ ସାହାଯ୍ୟ କରି ବଞ୍ଚାଇ ଦେଲ ଏବଂ ଉଠାଇ ନେଇ ସ୍ନେହସୁଧା ସିଞ୍ଚନରେ ମୋତେ ସୁଖୀ କରିଦେଲ ! କେବଳ ଥରେ ନୁହେଁ, ବହୁବାର । ଏ କିଛି ପୁରୁଣା କଥା ନୁହେଁ । ଏବେ ବି ପ୍ରତିଦିନ ତୁମେ ତାହା ହିଁ କରିଚାଲିଛ । ତୁମ ପ୍ରତି ମୋ କୃତଘ୍ନତାର ଅଭାବ ନାହିଁ, ହେଲେ ତୁମ ଅତୁଳନୀୟ କାରୁଣିକତାରୁ ତୁମେ କେବେହେଲେ ବିଚ୍ୟୁତ ହୋଇ ନାହଁ । ଧନ୍ୟ ମୋର ସ୍ୱାମୀ ! ତୁମେ ଧନ୍ୟ !

ଦୟାମୟ ! ମୁଁ ସତେ କେଡ଼େ ପାଷାଣ୍ଡ, ଯିଏ କି ତୁମର ଏପରି ଅହେତୁକୀ କୃପାକୁ ଅନୁଭବ କରି ମଧ୍ୟ ତୁମକୁ ଭୁଲି ଯାଉଛି ? ତୁମ ଶ୍ରୀଚରଣରେ ଲୋଟିପଡ଼ି କେବଳ ସେଇ ଅଭୟ ପାଦପଦ୍ମକୁ ହିଁ ମୋ ପ୍ରାଣର ପ୍ରାଣ, ଜୀବନର ସର୍ବସ୍ୱ କରିପାରୁ ନାହିଁ । ତୁମେ ମୋର ଏହି ନୀଚତା ପ୍ରତି ଦୃଷ୍ଟି ଦିଅ ନା ପ୍ରଭୁ ? ନାଁ, ସତରେ କ'ଣ ତୁମେ ଦେଖୁଛ ? ଜଗତରେ ମୋଠାରୁ ବଳି ପାମର କିଏ ଅଛି ! ମୋର ଏଇ ଆଚରଣ ଆଡ଼େ ଦୃଷ୍ଟି ଥିଲେ କ'ଣ ତୁମେ ଏତେ ପ୍ରେମ ତଥା ସ୍ନେହ ଅଜାଡ଼ି ଦେଇଥାଆନ୍ତ ? ଏବେ ପ୍ରଭୁ ! ଏହା ହିଁ କର ଏବଂ ତୁରନ୍ତ କର, (କାହିଁକି ନା, ମୋର ଏହି କ୍ଷୁଦ୍ର ଜୀବନ ଦୀପଟି କେତେବେଳେ ହୁଏ ତ ଲିଭିଯିବ) ମୁଁ ଯେପରି ତୁମ କରୁଣାକୁ କେବେ ଭୁଲି ନ ଯାଏ ଏବଂ ପ୍ରତି ମୁହୂର୍ତ୍ତରେ କୃତଜ୍ଞତାପୂର୍ଣ୍ଣ ହୃଦୟରେ ତୁମ ପାବନ ପାଦପଦ୍ମ ସ୍ମରଣ କରି ତୁମ ଦୁଆରେ ପଡ଼ି ରହିଥାଏ ।



(୬)

ହେ ମୋର ସ୍ୱାମୀ !

ଜୀବନର ଦିନଗୁଡ଼ିକ ସରି ଆସୁଛି । ଏପରି ଦିନ କେବେ ବା ହେବ, ଯେତେବେଳେ କି ମୁଁ ତନୁ, ମନ, ଧନ, ଘରସଂସାର ସବୁ ତ୍ୟାଗ କରି କେବଳ ତୁମରି ଭଜନରେ ହିଁ ଲାଗି ରହିବି ? ଅନେକ ଥର ଏହା ଭାବୁଛି, କିନ୍ତୁ କରି ପାରୁନି, ସମୟ ଗଡ଼ି ଯାଉଛି । ସବୁ ଦିଗ, ସମସ୍ତ ବସ୍ତୁ ଏବଂ ପରିସ୍ଥିତି ପରିବର୍ତ୍ତନ ହେଉଛି । ଯାହା ଆଜି ଅଛି, ତାହା କାଲିକି ନାହିଁ। କୌଣସି ଅବସ୍ଥାରେ ବାସ୍ତବ ସୁଖ ଅନୁଭବ ହେଉ ନାହିଁ । ନିଜ ଭାବନା ଅନୁଯାୟୀ ସବୁବେଳେ କଳ୍ପନାର ସୁଖ-ଦୁଃଖରୂପକ ସମୁଦ୍ରରେ ବୁଡ଼ୁଛି ଉଠୁଛି । ବୁଝୁଛି, ବେଶ୍ ଭଲ ଭାବେ ଜାଣୁଛି ଯେ ସବୁ କିଛି ବିନାଶଶୀଳ । ତଥାପି ଏ ସବୁଥିରୁ ମୁହଁ ଫେରାଇ ତୁମ ନିତ୍ୟ ନବ ସୁନ୍ଦର ସ୍ୱରୂପ, ନିତ୍ୟ କଲ୍ୟାଣମୟ ନାମ ଏବଂ ନିତ୍ୟ ସତ୍ୟ ଅଭୟ ପାଦପଦ୍ମରେ ଆଶ୍ରୟ ନେଇପାରୁ ନାହିଁ । ହେ ପ୍ରଭୁ ! ମୋର ଏ ମୋହନିଦ୍ରା କେବେ ଭାଙ୍ଗିବ? ପ୍ରତିଦିନ ମନରେ ଅଶାନ୍ତି, ନାନା ପ୍ରକାରର କଳ୍ପନା ମନକୁ ସର୍ବଦା ଏପରି ଭାବେ କ୍ଷୁବ୍‌ଧ କରିଦେଉଛନ୍ତି, ଯେପରି କି ଭୀଷଣ ତୋଫାନରେ ସମୁଦ୍ରର ତରଙ୍ଗ ଉଛୁଳି ଆକାଶ ଛୁଏଁ ।

ହେ ମୋର ସ୍ୱାମୀ ! ଏ ଅଶାନ୍ତିରୁ କେବେ ମୁକ୍ତି ପାଇବି ? କେବେ ମୁଁ ଜାତି, କୁଳ, ବିଦ୍ୟା, କୀର୍ତ୍ତି, ସମ୍ପତ୍ତି, ସ୍ଥିତି ଓ ସାଧନାର ଅଭିମାନ ଛାଡ଼ି ତୁମ ଶ୍ରୀଚରଣ ତଳେ ନିଜକୁ ଲୋଟାଇଦେବି । ପ୍ରଭୁ ! ତୁମରି ପରମ ବଳରେ ବଳବାନ୍ ଓ ତୁମରି ପରମ ଧନରେ ଧନବାନ୍ ହୋଇ ଆଉ କେବେ ମୁଁ ଅଭାବର ଅନୁଭବକୁ ଶାନ୍ତିମୟ ଅନୁଭବରେ ପରିଣତ କରିପାରିବି ?

ହେ ଦୀନବନ୍ଧୁ ! ମୁଁ ପଢୁଛି, ଶୁଣୁଛି, କହୁଛି ଏବଂ ବେଳେ ବେଳେ ବିବେକର ଅନୁଭବରୁ ଉପଲବ୍‌ଧି କରୁଛି ଯେ ସର୍ବଦା, ସବୁସ୍ଥାନରେ,

ସମସ୍ତ ସ୍ଥିତିରେ ଏବଂ ସବୁ କାର୍ଯ୍ୟରେ ତୁମେ ହିଁ ପରିପୂର୍ଣ୍ଣ । ତୁମ ସ୍ୱରୂପଉଦ୍ଭୂତ ମଙ୍ଗଳମୟୀ, ଅନିଚ୍ଛାମୟୀ ଇଚ୍ଛାଦ୍ୱାରା ଏ ସାରା ଖେଳ ଚାଲିଛି । ମୋହପୂର୍ଣ୍ଣ ଆଖିରେ ଯାହା ବି ଅମଙ୍ଗଳ ଦେଖୁଛି, ସେଠାରେ ମଧ୍ୟ ଆପଣଙ୍କର ମଙ୍ଗଳମୟ ବିଧାନ କାମ କରୁଛି । ଜନ୍ମ-ମୃତ୍ୟୁ, ସୁଖ-ଦୁଃଖ, ସଂଯୋଗ-ବିୟୋଗ, ଲାଭ-କ୍ଷତି, ଅନୁକୂଳତା-ପ୍ରତିକୂଳତା ଆଦି ସବୁରି ମଧ୍ୟରେ ତୁମରି ମଙ୍ଗଳମୟ କରସ୍ପର୍ଶ ରହିଛି । ସବୁ କିଛି ତୁମଠାରୁ ସୃଷ୍ଟି ହୋଇ ତୁମରି ପାଖରେ ବିଦ୍ୟମାନ ହୋଇ ପୁଣି ତୁମ ଭିତରେ ଲୀନ ହୋଇଯାଉଛି । ଆଗରେ, ପଛରେ ଏବଂ ମଝିରେ କେବଳ ତୁମେ ହିଁ ତୁମେ । ତୁମର ସ୍ୱାଭାବିକ ସ୍ୱରୂପମୟୀ କରୁଣା ସବୁ ଜୀବଙ୍କ ଉପରେ ସଦା ବୃଷ୍ଟି ହେଉଛି ଏବଂ ସେମାନଙ୍କର ପରମ କଲ୍ୟାଣ ସାଧନ ହେଉଛି । ମାତ୍ର ହେ ନାଥ ! ମୁଁ ଏହି ସତ୍ୟକୁ ଯଥାର୍ଥଭାବେ ଗ୍ରହଣ କରିପାରୁ ନାହିଁ, ବରଂ ଅଜ୍ଞତାବଶତଃ ନାନାପ୍ରକାର କଳ୍ପନା କରି ସୁଖୀ ବା ଦୁଃଖୀ ହୋଇ ବଞ୍ଚୁଛି ।

ହେ ପ୍ରଭୁ ! ଏବେ ଏତିକି କରୁଣା କର, ମୋ ଅଜ୍ଞାନତାର ପରଦା ଫାଟିଯାଉ, ମୋହ ଆବରଣ ହଟିଯାଉ ଏବଂ ମୁଁ ତୁମର ସ୍ୱରୂପ ଓ ତୁମ କ୍ରୀଡ଼ାକୁ ଉପଲବ୍ଧି କରି ତୁମର ହୋଇଯାଏ । ତାହା ନ ହେଲେ ହେ ପ୍ରଭୁ ! ଏପରି ବରଂ କରିଦିଅ, ଯେପରି ମୋ ମନରେ ଭଲ ମନ୍ଦ କୌଣସି ବି ଇଚ୍ଛା ସୃଷ୍ଟି ନ ହେଉ, ମୋର କୌଣସି କାମନା ନ ରହୁ । ତୁମର ଯାହାକିଛି ଇଚ୍ଛା ତାହା କର । ତୁମର ଯେପରି ଇଚ୍ଛା ସେପରି ହେଉ; ଏବଂ ଯେଉଁ ସ୍ଥିତିରେ ଯେଉଁଠି ମୋତେ ରଖିବ, ସେଠାରେ ରହି ମୁଁ ସର୍ବଦା ତୁମ ନାମ କୀର୍ତ୍ତନ କରୁଥାଏ ।



(୭)

ଭଗବାନ !

ମୁଁ ଶୁଣିଛି, ତୁମ ଶ୍ରୀଚରଣର ଶରଣ ଅତ୍ୟନ୍ତ ସୁଖଦାୟକ । ଯିଏ ଶରଣ ନିଏ, ତାହାର ବିନାଶ, ବିୟୋଗ, ଅଭାବ, ଶତ୍ରୁତା, ପାପ-ତାପ, ଦେବ-ଦାନବ, କଳ୍ପନା-ଜଳ୍ପନା, ମାୟାମୋହ, ଅହଂତ୍ୱ-ମମତ୍ୱ, ଆସକ୍ତି, କାମନା, କ୍ରୋଧ, ଲୋଭ ଆଦି କାହା ପ୍ରତି ଭୟ ରହେ ନାହିଁ । ଭୟର କଳ୍ପନାରୁ ମଧ୍ୟ ସେ ସର୍ବଥା ମୁକ୍ତ ହୋଇଯାଏ । ଦୁଃଖ ତ ଭୟରୁ ସୃଷ୍ଟି। ହେ ମୋର ପ୍ରିୟତମ ! ମୁଁ ଶୁଣିଛି, ତୁମର ମନ୍ଦ ମଧୁର ସ୍ମିତ-ହାସ୍ୟ ରଞ୍ଜିତ ସୁନ୍ଦର ବଦନ କଥା ତ ବହୁତ ଦୂର, ଯିଏ ତୁମ ଶ୍ରୀପଦ ଅଙ୍କିତ ଭୂମିକୁ ଦର୍ଶନ କରେ, ସେ ଆନନ୍ଦ ସାଗରରେ ନିମଗ୍ନ ହୋଇଯାଏ ଏବଂ ଇଚ୍ଛା କଲେ ତୁମ ଶ୍ରୀଚରଣ ସ୍ପର୍ଶ ଲାଭ କରିପାରେ । ତେବେ ହେ ମୋର ସର୍ବସ୍ୱ !ତୁମ ପରମସୁଖଦାୟକ ଶ୍ରୀଚରଣ ଶରଣ ତ୍ୟାଗ କରି ଏବଂ ତୁମ ପରମ ଆନନ୍ଦମୟ ଶ୍ରୀପଦ ଶରଣ ଛାଡ଼ି ମଣିଷ ଇତସ୍ତତଃ ଘୂରି ବୁଲୁଛି, ପ୍ରତାରିତ ହେଉଛି, ନରକଗାମୀ ହେଉଛି ଓ ଭୀଷଣ ଦୁଃଖର ବୋଝ ବୋହୁଛି କାହିଁକି ? ବୁଝିଲି ପ୍ରଭୁ ! ମଣିଷର ଅଜ୍ଞାନତା ହିଁ ତାହାର ଦୁଃଖର ମୁଖ୍ୟ କାରଣ ଅଟେ । କିନ୍ତୁ ଏହି ଅଜ୍ଞାନତାକୁ ଦୂର କରିବା କ'ଣ ମନୁଷ୍ୟ ପକ୍ଷେ ସମ୍ଭବ ? ମୋ ସାଧାରଣ ବୁଦ୍ଧିରେ ଏହା ହିଁ ଭାବୁଛି, ତୁମେ ଏହି ଅଜ୍ଞାନତାକୁ ହରଣ କରିବାକୁ ଚାହିଁଲେ ହିଁ ଏହା ଦୂର ହୋଇପାରିବ । ତେବେ ତୁମେ ଏହାକୁ ନେଇ ଯାଉନାହଁ କାହିଁକି ? ତୁମର ଏଥିରେ କ'ଣ ଅସୁବିଧା ହେଉଛି ପ୍ରଭୁ ! ହଁ ଭୁଲିଗଲି ପ୍ରଭୁ ! ଏପରି ପ୍ରାର୍ଥନା କରି ମୁଁ ନିଜକୁ ତୁମଠାରୁ ଅଧିକ ବୁଦ୍ଧିମାନ୍ ଏବଂ ଦୟାଳୁ ବୋଲି ପ୍ରମାଣିତ କରିବାକୁ ଚାହୁଁଛି, ସତେ ଯେପରି ମନୁଷ୍ୟମାନଙ୍କ ଦୁଃଖଭାରରେ ମୁଁ ବ୍ୟାକୁଳ ଏବଂ ସତେ ଯେପରି ତୁମକୁ ଏ ବିଷୟରେ କିଛି ଜଣାନାହିଁ ! ମାତ୍ର ମୁଁ କ'ଣ କରିବି ? ମୋ ଅନ୍ତରରେ ତୁମ କୃପାଦତ୍ତ ଉଦାସୀନତା ଏପରି କରିବାକୁ ବାଧ୍ୟ କରୁଛି । ଅବଶ୍ୟ ଏହା ମୋର ଅପରାଧ ।

ତେବେ ଯାହା ବି ହେଉ; ଏପରି ଅପରାଧରୁ ରକ୍ଷା ପାଇବା ବଡ଼ କଠିନ । ତଥାପି କିଛି କଥା ନାହିଁ, ହେ ପ୍ରଭୁ ! ଏପରି ଭୟାନକ ଅପରାଧ ପାଇଁ ମୋତେ ମନଇଚ୍ଛା ଦଣ୍ଡ ଦିଅ ପଛକେ, ଏ ଅପରାଧୀର କାତର ପ୍ରାର୍ଥନା ଶୁଣି, ଦୁଃଖତାପରେ ତାପିତ ଜୀବମାନଙ୍କର ଅଜ୍ଞାନତା ଦୂର କରି ସେମାନଙ୍କୁ ଆପଣଙ୍କ ଚରଣରେ ଶରଣ ଦିଅ ଏବଂ ସେମାନଙ୍କ ମନ ଭିତରେ ଏପରି ବାସନା ଜାଗ୍ରତ କର, ଯେପରି ସେମାନେ ସବୁକିଛି ଭୁଲି କେବଳ ତୁମର ସେଇ ଋଷି-ମୁନିଦୁର୍ଲଭ ଶ୍ରୀଚରଣର ଦର୍ଶନ ପାଇଁ ଲାଳାୟିତ ହେବେ ।

ହେ ପ୍ରଭୁ ! ତୁମେ ମୋ ଆଡ଼େ ଗ୍ରହିଁଲେ, ମୋ ସାଧନା ଓ ପୁରୁଷାର୍ଥର ପ୍ରତୀକ୍ଷା କରି ରହିଲେ ମୋର ଏ ଦାରୁଣ ଦୁଃଖଭାର କେବେ ଲାଘବ ହୋଇପାରିବ ନାହିଁ । ବରଂ ତୁମେ ନିଜ ଆଡ଼କୁ, ତୁମ ହୃଦୟ ଆଡ଼କୁ ଅନାଇଁ, କୃପାସୁଧାବାରି ସିଞ୍ଚନ କରି ମୋର କଳୁଷିତ ହୃଦୟକୁ ଧୋଇ ଅମୃତମୟ କରିଦିଅ । ଏହା ସତ ଯେ, ମୁଁ ସାଧନାହୀନ ହୋଇ ମଧ୍ୟ ନିଜକୁ ସିଦ୍ଧ ବୋଲି ମନେକରୁଛି । ଅନ୍ତତଃ ସ୍ୱୀକାର କରିନେଉଛି, ଏହା ମୋର ଗୁରୁତର ଅପରାଧ । ଏହି ଅପରାଧକୁ ଧରି ବସିଲେ ମୁଁ ତୁମ ଆଡ଼କୁ ଯିବାର ଯୋଗ୍ୟ ହୋଇପାରିବି ନାହିଁ ପ୍ରଭୁ ! ଏହି ଗୋଟିଏ କାହିଁକି, ମୋର ଏପରି ସହସ୍ର ଅପରାଧ ରହିଛି । ମୁଁ ଅପରାଧର ସମୁଦ୍ର । ଏପର୍ଯ୍ୟନ୍ତ କ'ଣ ନ କରିଛି ? ଏ ଅପରାଧକୁ କୃପା-ଜ୍ୟୋତିରେ ଜାଳିଦିଅ ପ୍ରଭୁ ! ଏ ପାପ ଅନ୍ଧକାରମୟ ହୃଦୟକୁ ଜ୍ୟୋତିର୍ମୟ କର । କିନ୍ତୁ ମୋ ହୃଦୟରେ ବିଶ୍ୱାସ କେଉଁଠି ହେଉଛି ? ଯାହା ବି ହେଉ ହେ ପ୍ରଭୁ ! ଏ ସମସ୍ତ ବିଷୟରେ ଯେପରି ମୁଁ ସବୁ ଦିଗରୁ ତୁମ ଶ୍ରୀଚରଣକମଳ ଭରସାରେ ପଡ଼ି ରହିପାରିବି, ତାହା ହିଁ କର । ତୁମେ ଯାହା ଯେପରି ଇଚ୍ଛା କରୁଛ, ତାହା ହିଁ କର । ମୋର ଏଇ ବର୍ତ୍ତମାନର ଧାରଣା, ତୁମ ଚରଣାଶ୍ରୟରେ ନିର୍ଭରତା ଯେପରି ଅଜର-ଅମର ହୋଇଯାଉ, ଏଇ ବର ଦିଅ ଦୟାମୟ ।



ହେ କରୁଣାମୟ !

ମୁଁ ତୁମ ସ୍ମରଣ, ଭଜନ ଓ ଧ୍ୟାନ କରିବାକୁ ଚାହୁଁଛି । ବେଳେବେଳେ ମୋ ବୁଦ୍ଧି ତୁମ ଭଜନ-ସ୍ମରଣରେ ସମଗ୍ର ଜୀବନ କଟାଇ ଦେବା ପାଇଁ ସ୍ଥିର କରିଥାଏ । ଏହି ସ୍ଥିରୀକୃତ ଧାରଣାକୁ ନେଇ ମୁଁ ବାରମ୍ବାର ଚେଷ୍ଟା କରେ ତଥା ଭଜନ-ସ୍ମରଣ କରିବା ପାଇଁ ଆରମ୍ଭ କରେ, ମାତ୍ର ଅଳ୍ପ ସମୟ ପରେ ଅନୁଭବ କରେ ଯେ, ଚିତ୍ତ ଅନ୍ୟ କୁଆଡ଼େ ଚାଲିଯାଉଛି । ଦୁଃଖ ଲାଗେ ଏବଂ ଉତ୍ସାହ ତୁଟିଯାଏ । ଏଣେ ସଂସାରର ବାସନାମାନଙ୍କର ପ୍ରବଳ ଆକର୍ଷଣ । ଭଜନ ସ୍ମରଣ କିଛି ବି ହୋଇପାରୁନାହିଁ । ହେ ଦୀନବନ୍ଧୁ ! ତୁମେ କୃପା କରି ଏପରି ଶକ୍ତି ଦିଅ, ଯାହାଦ୍ୱାରା ତୁମ ଭଜନ-ସ୍ମରଣ ହିଁ ମୋ ଜୀବନରେ ଏକମାତ୍ର କାର୍ଯ୍ୟ ହେବ ।

ଭଗବାନ ! ଯେତେବେଳେ କାହାର ମୃତ୍ୟୁ କଥା ଶୁଣେ, ସେତେବେଳେ କିଛି ସମୟ ପାଇଁ ମନ ଭିତରେ ବୈରାଗ୍ୟ ଆସିଯାଏ । ଭାବେ, ମୁଁ ବି ଏପରି ଦିନେ ମରିଯିବି । ବିଷୟ ପ୍ରତି ବୈରାଗ୍ୟ ଭଳି ଚିନ୍ତା ଆସେ, ତୁମ ଠାରେ ମନ ଲାଗେ । କିନ୍ତୁ କ'ଣ କହିବି ହେ ଅନ୍ତର୍ଯ୍ୟାମୀ ! ତୁମେ ତ ସବୁ କିଛି ଜାଣୁଛ । କିଛି ସମୟପରେ ସେହି ବୈରାଗ୍ୟର ନାମଗନ୍ଧ ବି ରହେ ନାହିଁ । ମନ ପୂର୍ବପରି ବିଷୟ ସେବନରେ ନିମଜ୍ଜିତ ହୋଇଯାଏ । ହେ ନାଥ ! ତୁମେ କୃପା କରି ଏପରି ଶକ୍ତି ଦିଅ, ଯାହାଦ୍ୱାରା ମୁଁ ବିଷୟ ଆସକ୍ତିରୁ ନିଜକୁ ମୁକ୍ତ କରି ତୁମ ଚରଣରେ ନିରନ୍ତର ମୋ ମନକୁ ଲଗାଇ ପାରିବି । ତୁମରି ଚିନ୍ତନ ହିଁ ମୋ ଜୀବନର ଆଧାର ହୋଇ ରହିବ ।

କରୁଣାମୟ ! ତୁମେ ତ ଜାଣ ମୁଁ କେଡ଼େ ଦୁଃଖୀ ! ରାତି-ଦିନ ଅଶାନ୍ତି ଅଗ୍ନିରେ କୁହୁଳୁଛି । ପ୍ରାପ୍ତର ସର୍ବଦା ସୁରକ୍ଷା ଏବଂ ଅପ୍ରାପ୍ତକୁ ପ୍ରାପ୍ତ କରିବାର ଅଭିଳାଷ ଦିନ-ରାତି ସର୍ବଦା ମୋ ହୃଦୟରେ ଜ୍ୱାଳା ଲଗାଇ ରଖିଛି । ଯେତେବେଳେ କିଛି ପାଇଯାଉଛି, ସେତେବେଳେ ସେହି ଅଗ୍ନିର ଜ୍ୱାଳା ଆହୁରି ବଢ଼ିଯାଉଛି । ପ୍ରଭୁ ! ମୋତେ ସଦା-ସର୍ବଦା ସନ୍ତାପ

ଦେଉଥିବା ଏଇ ଅଗ୍ନିକୁ ନିର୍ବାପିତ କରାଇ ମୋତେ ଶାନ୍ତ କର। ମୋ ହୃଦୟରେ ଜଳିବ ଯଦି ତୁମ ବିରହର ଅଗ୍ନି ଜଳୁ। ହେ ମୋର ଜୀବନଧନ ! ମୁଁ ରାତି-ଦିନ ତୁମରି ଆଗମନର ପ୍ରତୀକ୍ଷାରେ, ପ୍ରତିକ୍ଷଣ ତୁମରି ସ୍ମରଣ କରି ଜୀବନ ଧାରଣ କରେ । ହେ ମୋର ରାଧାରମଣ ! ତୁମେ ତ ମୋ ମନରେ ରମଣ କରୁଛ। ତୁମେ ବେଶ୍ ଜାଣ ମୋର ଏଇ ପ୍ରାର୍ଥନାରେ କେତେଦୂର ସତ୍ୟତା ଏବଂ କେତେ ଦମ୍ଭ ରହିଛି । ସତ୍ୟତା ଥିଲେ, ହେ ସତ୍ୟ ! ହେ ସତ୍ୟପ୍ରିୟ ! ତୁମେ ମୋତେ ଦର୍ଶନ ଦେବାରେ ଏତେ ବିଳମ୍ବ କରନ୍ତ କାହିଁକି ? ହେ ଅସୁରାରି ! ମୋ ହୃଦୟରେ ନିବାସ କରୁଥିବା ଏହି ଦମ୍ଭାସୁରକୁ ଯେତେଶୀଘ୍ର ସମ୍ଭବ ବିନାଶ କରୁନାହଁ କାହିଁକି ? ତାହାହେଲେ ସିନା ମୋ ମନରେ ତୁମପାଇଁ ସତ୍ୟ ସଙ୍କଳ୍ପ ଆସିବ ଏବଂ ଏ ଜୀବନ ତୁମକୁ ପାଇ କୃତାର୍ଥ ହୋଇଯିବ।

ହେ ମୋର ସର୍ବସ୍ୱ ! ମୁଁ ତୁମକୁ ହିଁ ଜୀବନର ସର୍ବସ୍ୱ ବୋଲି ମାନିବି। ତୁମକୁ ହିଁ ମୋର ଆତ୍ମାର ଆତ୍ମା, ଈଶ୍ୱରଙ୍କ ଈଶ୍ୱର, ଗୁରୁଙ୍କ ଗୁରୁ, ଧର୍ମର ଧର୍ମ, ସତ୍ୟର ସତ୍ୟ, ଜ୍ଞାନର ଜ୍ଞାନ, ବୈରାଗ୍ୟର ବୈରାଗ୍ୟ, ଐଶ୍ୱର୍ଯ୍ୟର ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟର ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟର ସୌନ୍ଦର୍ଯ୍ୟ ବୋଲି ମନେ କରିବି ଏବଂ ସଦା ତୁମକୁ ପାଇବା ପାଇଁ ଲାଳସା କରିବି। ତୁମକୁ ମୁଁ ପାଏ ବା ନ ପାଏ, ତୁମ ମନମୋହନ ମୁଖଶ୍ରୀ ଦର୍ଶନ କରେ ବା ନ କରେ, ମୁଁ ବିନା ସର୍ତ୍ତରେ, ବିନା ବିରକ୍ତିରେ, ବିନା ଅଧୈର୍ଯ୍ୟରେ, ବିନା ଆଶାରେ କେବଳ ତୁମକୁ ହିଁ ସ୍ମରଣ କରୁଥିବି ଏବଂ ଏ କଥା କେବେ ମନକୁ ଆସିବ ନାହିଁ ଯେ, ମୁଁ କାହିଁକି ତୁମକୁ ସ୍ମରଣ କରୁଛି। ମୋତେ ଏହି ବରଦାନ ଦିଅ ସ୍ୱାମୀ !

**ତନ ମନ ଧନ କରିଲି ଅର୍ପଣ ତୁମ ପଦେ ବ୍ରଜରାଜ।**
**ଯାହା ଇଚ୍ଛା ତାହା କର ହେ ଗୋବିନ୍ଦ ଆଶ୍ରା ପଦ ସରସୀଜ ॥**



(୯)

ହେ ମୋର କୃପାମୟ ସ୍ୱାମୀ !

ତୁମ କୃପାରୁ ପ୍ରଥମେ ଯେତେବେଳେ ମୁଁ ସାଧନ-ଭଜନ କରୁଥିଲି, ସେତେବେଳେ ମୋ ଭାବ ଅଧିକ ଭଲ ଥିଲା । ମୁଁ ବୁଝୁଥିଲି ଓ ଭାବୁଥିଲି ଯେ ସମଗ୍ର ସଂସାର ଭଗବାନଙ୍କ ଦ୍ୱାରା ପରିପୂର୍ଣ୍ଣ, ସବୁକିଛି ତାଙ୍କରି ପ୍ରେରଣାରେ ଚାଲିଛି ଏବଂ ସବୁଠାରେ ତାଙ୍କରି ଶକ୍ତି କାମ କରୁଛି । ଭଗବାନ ହିଁ ମୋ ଜୀବନର ଏକମାତ୍ର ଲକ୍ଷ୍ୟ । ସର୍ବଦା ଭଗବାନଙ୍କୁ ସ୍ମରଣ କରି ସମସ୍ତ କାର୍ଯ୍ୟ ମୁଁ ଭଗବାନଙ୍କ ପ୍ରୀତ୍ୟର୍ଥେ କରିବି । ମୋ ମନ, ବୁଦ୍ଧି, ସକଳ ଇନ୍ଦ୍ରିୟ କେବଳ ପ୍ରଭୁଙ୍କ ସେବାରେ ହିଁ ଲାଗି ରହିବ ଏବଂ ମୁଁ ପ୍ରତି ମୁହୂର୍ତ୍ତରେ ତାଙ୍କ ମଧୁର ପ୍ରେମର ଦିବ୍ୟ ସ୍ୱାଦ ଆସ୍ୱାଦନ କରି ମସଗୁଲ୍ ହୋଇ ରହିବି । ମାତ୍ର ଆଜି ଦେଖୁଛି, ସବୁ ବ୍ୟତିକ୍ରମ । ତୁମେ ବିରାଜିତ ହୋଇଥିବା ପବିତ୍ର ଆସନ ଉପରେ ମୁଁ ମୋହବଶତଃ ମୋର ଏହି ଅନିତ୍ୟ, ଅପବିତ୍ର ଓ ପାପ କଳୁଷିତ ନାମ-ରୂପକୁ ବସାଇ, ତାହାରି ପୂଜା କରିବା ପାଇଁ ଆଗ୍ରହୀ । ମୋର ପ୍ରତ୍ୟେକ କାର୍ଯ୍ୟରେ ଆଜି ମମତା, ଅଭିମାନ ଓ ଆସକ୍ତିର ନଗ୍ନ ନୃତ୍ୟ ଚାଲିଛି । ସାଂସାରିକ ଭୋଗବାସନାରେ ମୋର ମନ-ପ୍ରାଣ ଏତେ ଅଧିକ ମାତ୍ରାରେ ଆସକ୍ତ ହୋଇଯାଇଛି ଯେ, ମୋ କାର୍ଯ୍ୟରେ କୌଣସି ପ୍ରକାରର ଦୋଷ ମୋତେ ଦେଖାଯାଉ ନାହିଁ, ସେତେବେଳେ ସତ୍-ଅସତ୍ ବୁଦ୍ଧିର ବିଚାର ବା କେଉଁଠୁ ଆସିବ ? ଯଦି ତୁମର ପବିତ୍ର ପ୍ରେମ ସ୍ମରଣ କରିବାକୁ ଯାଏ, ତେବେ ସେତେବେଳେ ଭୋଗବାସନାର ବିଚିତ୍ର-ବିଚିତ୍ର ଚିତ୍ର ଚିତ୍ତପଟରେ ପୁଞ୍ଜୀଭୂତ ହୋଇ ଦେଖାଯାଏ ଏବଂ ମୁଁ ତୁମକୁ ଭୁଲି ସେଥିରେ ଭୋଳ ହୋଇଯାଏ । ହେ ଭଗବାନ ! କାହିଁକି ଏପରି ଅବସ୍ଥା ହେଲା ମୋର ? ପ୍ରକୃତରେ ପ୍ରଭୁ ମୁଁ ପତନୋନ୍ମୁଖୀ ହେଉଛି । ବିଦ୍ୟା, ବୁଦ୍ଧି ଓ ଜ୍ଞାନର ଅଭିମାନ ମୋତେ କେତେ ଯେ ପୂଜନୀୟ ବ୍ୟକ୍ତିତ୍ୱରୂପକ ଅପମାନ ଦେଇଛି ତାହାର କଳନା

ନାହିଁ । ଅଧିକାର, ପ୍ରତିଷ୍ଠା, ସମ୍ମାନ ଓ ସୁଖ୍ୟାତିର ଯାଦୁକରୀ ପ୍ରଭାବ ଏତେ ଅଧିକ ଯେ, ତୁମ ପବିତ୍ର ସ୍ମରଣର ଆବଶ୍ୟକତା ମଧ୍ୟ ଅନୁଭୂତ ହୋଇ ପାରୁନି ବା ତୁମକୁ ଭୁଲିଗଲେ ବି ମୁଁ ଟିକିଏ ପଶ୍ଚାତ୍ତାପ କରୁନାହିଁ । ଦୁଃଖର କଥା ଯେ, କେବେ କେବେ ଏସବୁ 'ଜ୍ଞାନ' ନାମରେ ଘଟୁଛି । ମୋ ଧୃଷ୍ଟତା ଓ ନୀଚତାର ସୀମା ନାହିଁ ପ୍ରଭୁ ! ଏ ଦୁର୍ଦ୍ଦଶା ଆଉ କେତେଦିନ ରହିବ ? ହାୟ ! ହାୟ !! ହେ ମୋର ମାଲିକ ! ମୋତେ ବାଟ ବତାଇଦିଅ, ମୋର ଏହି ଦୟନୀୟ ଅବସ୍ଥା ପ୍ରତି ଦୟାଦୃଷ୍ଟି ରଖ ପ୍ରଭୁ ! ଟିକିଏ ଦୟା କର । ମୋର ସମସ୍ତ ପୁରୁଷାର୍ଥ ବ୍ୟର୍ଥ ହୋଇଗଲା । ଏଇ ସାଂସାରିକ ସୁଖ, ଧନ, ମାନ, କୀର୍ତ୍ତି ଆଦିର ପ୍ରଲୋଭନ ମୋ ସାଧନାକୁ ନଷ୍ଟ କରିପକାଇଛି । ମୁଁ ଆଜି ପୁରୁଷାର୍ଥହୀନ ଏବଂ ଏବେ ମୁଁ କେବଳ ତୁମକୁ ଭରସା କରିଛି ପ୍ରଭୁ ! ମୁଁ ବେଶ୍ ବୁଝି ସାରିଲିଣି, ଯାହାକିଛି ହେବ, ତାହା କେବଳ ତୁମରି କୃପାରେ ହିଁ ହେବ । ତୁମର କୃପାଶକ୍ତି ଦ୍ୱାରା ମୋର ସମଗ୍ର ଅନର୍ଥକାରୀ ମନୋରଥ ମହଲ ଧୂଳିସାତ୍ ହେବ, ମୋର ସମସ୍ତ ଅଭାବ ଅନୁଭବକୁ ସର୍ବଥା ଅଭାବ କରିଦିଅ । ମୋ ମନ ନିତ୍ୟ-ନିରନ୍ତର ତୁମରି ମଧୁର ରୂପ, ଅପ୍ରତିମ ଗୁଣ ଓ ପବିତ୍ର ନାମ ଉପରେ ମାତାଲ ହୋଇରହୁ । ମୋର ବୁଦ୍ଧି ସଦା-ସର୍ବଦା ତୁମରି ତତ୍ତ୍ୱ ଚିନ୍ତନରେ ଲାଗିରହୁ । ମୋ ଇନ୍ଦ୍ରିୟଗଣ ସର୍ବତ୍ର ସବୁଦିଗରୁ କେବଳ ତୁମରି ସେବାରେ ହିଁ ସଂଲଗ୍ନ ହୁଅନ୍ତୁ । ମୋର ସମଗ୍ର ମମତା ଓ ସବୁ ଆସକ୍ତି ସବୁ ଆଡୁ ସଙ୍କୁଚିତ ହୋଇ ଏକମାତ୍ର ତୁମ ନିକଟକୁ ଆସି ସ୍ଥିର ହୋଇଯାଉ । ବସ୍ତୁତଃ ମୋ ମନ, ବୁଦ୍ଧି, ଇନ୍ଦ୍ରିୟ, ଅହଂକାର, ଆତ୍ମା ଆଦି ସମସ୍ତଙ୍କ ଉପରେ ସବୁକିଛିରେ ଏକମାତ୍ର ତୁମରି ଅଧିକାର ରହୁ । ହେ ନାଥ ! ହେ ମୋର କୃପାମୟ ସ୍ୱାମୀ !! ତୁମେ ମୋତେ ସମସ୍ତ ପ୍ରକାରେ ନିଜର କରିନିଅ ।



(୧୦)

କୃପାସିନ୍ଧୁ !

ଜୀବ ଉପରେ ତୁମର ସତେ କେତେ ଅସୀମ କୃପା ! କେବେ ଚୁପଚାପ୍ ପ୍ରେରଣା ଦିଅ ତ କେବେ ଝଲକର ଆଭାସ ଦେଖାଇ ଡାକ, କେବେ ହାତ ଧରି ଟାଣ ତ କେବେ ଜୋରକରି ଚାପୁଡ଼ା ମାରି ତୁମ ଆଡ଼କୁ ମୁହଁ ଫେରାଅ, କେବେ ଗେଲ କର ତ କେବେ ଖୋସାମତ କର, କେବେ ମାଆ ପରି ଲୋଭ ଦେଖାଇ ପାଖକୁ ଡାକ ତ କେବେ କାନ୍ଦିବାର ଅଭିନୟ କରାଅ, କେବେ ପରମ ବନ୍ଧୁ ପରି ବୁଝେଇ-ସୁଝେଇ କୁପଥରୁ ହଟାଇ ତୁମେ ବାଟରେ ନେବାକୁ ଚାହଁ ତ କେବେ ଦୁଃଖ-କ୍ଳେଶ ଆଦିର ବିଜୁଳି ଚମକାଇ ସଚେତନ କରିଦିଅ । ମୁଁ ଜାଣେ ନା, କେବେ କିପରି ଭାବେ ମୋତେ ତୁମେ ସାନ୍ନିଧ୍ୟ ଦେବାକୁ ଚାହଁ । ତେବେ ମୁଁ ଏତେ ନୀଚ, ଅଯୋଗ୍ୟ ଯେ, ସବୁବେଳେ ତୁମଠାରୁ ଦୂରରେ ରହିବାକୁ ଇଚ୍ଛୁକ । ତୁମେ ଯଦି ମୋ ସମ୍ମୁଖରେ ଆସି ଉଭା ହୋଇଯାଅ, ତେବେ ମୁଁ ଚୋର ପରି ତୁମକୁ ଆଡୁଆଳ କରି ଦୂରକୁ ପଳାଇବାକୁ ଚାହେଁ । ମୁଁ ଭାବେ, ତୁମ ଫାନ୍ଦରେ ପଡ଼ିଗଲେ ମୋର ସୁନାର ସଂସାରଟା ନଷ୍ଟ ହୋଇଯିବ । 'ହାୟରେ ନୀଚ ମନ ! ଯେଉଁ ପ୍ରଭୁ ସଦା-ସର୍ବଦା ଚାରିଆଡୁ ଦେବାକୁ ଆଗ୍ରହୀ, ତାଙ୍କ ପ୍ରତି ତୁ କୃତଜ୍ଞ ହେବା ତ ଦୂରର କଥା, ତାଙ୍କ ଭଜନ-ସେବନ କରିବା ତ ବହୁତ ଦୂରର କଥା, ତାଙ୍କ କୃପା ସରିତାର ପ୍ରବାହ ସିଧା ତୋ ଆଡ଼କୁ ଆସିବାକୁ ମଧ୍ୟ ଦେଉନାହୁଁ । କେତେ ପ୍ରକାର ଲୁଚୁକାଳି ଖେଳୁଛୁ, କେତେ ବାହାନା ଦେଖାଉଛୁ, କିପରି ଭୟାନକ କଳ୍ପନାଗୁଡ଼ିଏ ସୃଷ୍ଟି କରି ଭୟଙ୍କର ଭୟର ଭୂତ ସୃଷ୍ଟି କରୁଛୁ !' ହେ ପ୍ରଭୁ ! ଏପରି କୁଟିଳ ଏବଂ କୁତ୍ସିତ ମନ କବଳରୁ କିପରି ଖସିବି ? ସେଥିପାଇଁ ତୁମ କୃପା ହିଁ ଏକମାତ୍ର ଅବଲମ୍ବନ ତଥା ଭରସା । ପ୍ରଭୁ ! ମୁଁ ତ ନୀଚାତିନୀଚ, ତୁମ କୃପାର ଅବହେଳା କରି ଆସିଛି । ତୁମ କୃପା-

ପ୍ରବାହକୁ ଅବରୋଧ କରିବା ପାଇଁ ବରଂ ନିତି ନୂଆ ନୂଆ ବନ୍ଧ ବାନ୍ଧିବାକୁ ଚେଷ୍ଟା କରୁଛି । ତଥାପି ପ୍ରଭୁ ! ଯେଉଁ ମହାନୁଭବ ବ୍ୟକ୍ତି ତୁମ ଭଜନ କରୁଛନ୍ତି, ତୁମ ଆରାଧନା କରୁଛନ୍ତି, ତୁମ ସେବା କରୁଛନ୍ତି, ସେମାନେ କ'ଣ ତୁମ କୃପା ପାଇବା ପାଇଁ ଏପରି କିଛି ମହତ୍ତ୍ୱପୂର୍ଣ୍ଣ ବସ୍ତୁ ପ୍ରତିବଦଳରେ ତୁମକୁ ଦେଇ ପାରୁଛନ୍ତି ? ନା ନା ! କଦାପି ନୁହେଁ, ଛାର ମନୁଷ୍ୟ ପାଖରେ କ'ଣ ବା ଅଛି, ଯାହା ଦେଇ ପ୍ରତିବଦଳରେ ତୁମ ମହାନ୍ ମହନୀୟ କୃପାଲାଭ କରିବା ପାଇଁ ସେ ଦାବି କରିପାରିବ ? ଏହା କେବଳ ତୁମର କୃପାଶକ୍ତି, ଯାହା କି ସାମାନ୍ୟ ଟିକିଏ ମାର୍ଗ ପାଇଲେ ସ୍ୱୟଂ ଆସି ଜୀବକୁ କୃତାର୍ଥ କରିବାକୁ ପହଞ୍ଚିଯାଏ । ସତେ ଯେପରି ସେହି କୃପାଶକ୍ତି ପ୍ରତି ମୁହୂର୍ତ୍ତରେ ପ୍ରତୀକ୍ଷା କରି ରହିଛି । କୃପାନାଥ ! ତୁମ ଶ୍ରୀବିଗ୍ରହ କେବଳ କୃପାରେ ହିଁ ନିର୍ମିତ ହୋଇଛି, ସେଥିରେ କେବଳ କୃପା ହିଁ କୃପା ଭରପୂର । ଏ ନୀଚ ଅଧମର ଏ ଗର୍ବ ଅଭିମାନପୂର୍ଣ୍ଣ ପୁତ୍ତଳିକାର ଏକମାତ୍ର ତୁମର ଅହେତୁକୀ କୃପା ଉପରେ ହିଁ ଭରସା ନାଥ !



**ଧନ ମାନ ଯଶ ଗଉରବ ବଳେ କରିବାକୁ ବିଶ୍ୱ ଜୟ ।**
**କେତେ କଳପନା ସଉଧ ଗଢ଼ିଲି କାଳକୁ ନ କରି ଭୟ ॥**
**ଭାଙ୍ଗିଦେଲ ତାକୁ ନିମିଷ ମଧ୍ୟରେ ବାଲିଘର ଖେଳ ପରି ।**
**ରୋଷ କଲି ସିନା ତୁମରି ଉପରେ ଅଜ୍ଞାନ ବାଳୁତ ସରି ॥**
**ଜାଣୁଛି ଏବେ ମୁଁ ଅଭିଶାପ ନୁହେଁ ସେ ତ କୃପା-ସୁଧାଧାର ।**
**ଅସ୍ଥିର ଲହରୀ ଜାଣିବ କିପରି ସାଗର ବୁକୁର ଗିର ॥**

(୧୧)

ହେ ନାଥ !

ପିଲାଦିନୁ ଆଜିଯାଏ ଘଟି ଯାଇଥିବା ପାପ, ଅପରାଧ, ଦୋଷ-ଦୁର୍ବଳତା, ମୂର୍ଖତା, ବିଷୟାସକ୍ତି, କାମ-କ୍ରୋଧ-ଲୋଭର ବଶବର୍ତ୍ତୀ ହୋଇ ପତିତ ହୋଇଥିବା ତଥା ମୃତ୍ୟୁ ନିକଟରେ ପହଞ୍ଚାଇ ଦେଇଥିବା ଅନେକ ଘଟଣା କଥା ମନେପଡୁଛି । ତତ୍ ସହିତ ମନେ ପଡ଼ିଯାଉଛି, ତୁମେ କିପରି ଆଶ୍ଚର୍ଯ୍ୟଜନକ ଭାବେ, କିପରି ତ୍ୱରାନ୍ୱିତ ହୋଇ କେତେ ଆତ୍ମୀୟତାର ସହିତ ମୋତେ ପ୍ରାୟ ସବୁଥିରୁ ରକ୍ଷା କରିଛ ! ଥରେ ପତିତ ହୋଇଯାଉଥିଲି, ତୁମେ ଯଦି ସାମାନ୍ୟ ବିଳମ୍ବ କରିଥାନ୍ତ, ତେବେ ମୋର ଯେ କ'ଣ ଦୁରାବସ୍ଥା ହୋଇ ଯାଇଥାନ୍ତା, କହି ହେବନାହିଁ । ବଡ଼-ବଡ଼ ପ୍ରଲୋଭନରୁ ତୁମେ ମୋତେ କିପରି ରକ୍ଷା କରିଛ ନାଥ ! ତୁମ ଦୟା ଏବଂ ପ୍ରେମର ଗୋଟିଏ-ଗୋଟିଏ କଥା ଏପରି ମଧୁର ଯେ, ଯାହା ସ୍ମରଣ କଲେ ମୋ ହୃଦୟ ଆନନ୍ଦରେ ଗଦ୍‌ଗଦ ହୋଇଯାଏ । ଆଖିବୁଜି ବିଷୟ-ବିଳାସ ଆଡ଼କୁ ଦୌଡ଼ିଲା ବେଳକୁ ମୋତେ ତୁମେ କିପରି ବାଧା ଦେଇଥିଲ ! ଲୋଭରୂପୀ ନଦୀର ଅତ୍ୟନ୍ତ ପ୍ରଖର ଧାରା ନିକଟରେ ପହଞ୍ଚି କୁଦା ମାରିବାକୁ ଯାଉଥିଲି, ମାତ୍ର ତୁମେ କୌଶଳ କ୍ରମେ ତୁରନ୍ତ ମୋତେ ବାଧାଦେଇ ଧୀରେ-ଧୀରେ କୋଳକୁ ଉଠାଇ ନେଇ ଉଦ୍ଧାର କଲ । ସେତେବେଳେ କି ଭୀଷଣ ଅନ୍ଧାର ଥିଲା ! ଚାରିଆଡ଼େ କେବଳ ଅନ୍ଧାର ହିଁ ଅନ୍ଧାର । ହାତକୁ ହାତ ବି ବାରି ହେଉ ନ ଥାଏ । ମୁଁ ସେତେବେଳେ କେତେ ବ୍ୟାକୁଳ ଥିଲି, କିପରି ଅସହାୟ ଦୀନହୀନ ଅବସ୍ଥାରେ ଥିଲି ! ଆହା ! ତୁମେ ସତରେ କେଡ଼େ ଦୟାଳୁ ପ୍ରଭୁ ! କୁଆଡୁ କେମିତି ହଠାତ୍ ତୁମେ ଆସି ସେଇଠି ପହଞ୍ଚିଗଲ । ତୁମ ଦିବ୍ୟ ଆଲୋକରେ ସମସ୍ତ ଅନ୍ଧକାର ଦୂରୀଭୂତ ହେଲା ଏବଂ ମୋତେ ଭୀଷଣ ମୃତ୍ୟୁମୁଖରୁ

ବଞ୍ଚେଇଦେଲ । ତୁମେ ନ ଦେଖିଥିଲେ ମୁଁ କେବେଠୁ ଯେ ବୁଡ଼ି ମରିସାରନ୍ତିଣି, ତାହାର କୌଣସି ଠିକଣା ନାହିଁ !

ହେ ମୋର ସ୍ୱାମୀ ! ମୋ ବିଶ୍ୱାସ କେମିତି ଟହଲି ଯାଇଥିଲା, ମନେଅଛି ? ମୁଁ କ'ଣ ନାହିଁ କ'ଣ କରିବାକୁ ଯାଉଥିଲି ସତେ ! ଯଦି ସାମାନ୍ୟତମ ବିଳମ୍ୱ ତୁମଆଡୁ ହୋଇଯାଇଥାନ୍ତା ନା, ମୋର ସର୍ବନାଶ ହୋଇଯାଇଥାନ୍ତା ଏବଂ ପଶ୍ଚାତ୍ତାପର ଅଗ୍ନିରେ ଜଳିବା ଛଡ଼ା ଆଉ କିଛି ଉପାୟ ନ ଥାନ୍ତା !

ମୁଁ ତ ଜାଲରେ ପଡ଼ି ସାରିଥିଲି, ତୁମେ କେମିତି କ'ଣ କରାମତି ଦେଖାଇ ମୋତେ ଉଦ୍ଧାର କରିନେଲ ! ତୁମର ସେତେବେଳର ମୋହିନୀ ଏବଂ ଭୟଙ୍କର ଆକୃତି ମୋର ଯେବେ ମନେ ପଡୁଛି, ସେତେବେଳେ ଲୋମ ପୁଲକିତ ହୋଇଯାଉଛି । ମୁଁ ବା କ'ଣ କହିବି ? ମୋପରି ନୀଚ, ଦୁରାତ୍ମା, କୃତଘ୍ନ, ବେଇମାନ ଏବଂ ସ୍ୱାମୀଦ୍ରୋହୀ ଆଉ କିଏ ହୋଇପାରିବ ? କିନ୍ତୁ ହେ ମୋର ନାଥ ! ତୁମପରି ଦୟାଳୁ ଏବଂ କ୍ଷମାଶୀଳ ଆଉ ଦ୍ୱିତୀୟ କେହି ହେଲେ ନାହିଁ ଏବଂ କଦାପି ହୋଇପାରିବେ ନାହିଁ । ବାରମ୍ୱାର ସେଇ ଭୁଲ, ସେଇ ଅପରାଧ, ସେଇ ପାପ, ସେଇ ବେଇମାନୀ ଏବଂ ସେଇ ଅଶ୍ରଦ୍ଧା ମୁଁ କରିଚାଲିଛି, ମାତ୍ର ତୁମର ସେସବୁ ପ୍ରତି ଆଦୌ ଦୃଷ୍ଟି ଯାଉନାହିଁ ! ତୁମେ ସବୁ ଦିଗରୁ ସଦା-ସର୍ବଦା ମୋପରି ଅସଜଡ଼ା ଲୋକଙ୍କୁ ସଜାଡ଼ିବାରେ ଲାଗି ରହିଛ । କେବେ ମୁହୂର୍ତ୍ତେମାତ୍ର ସେ ଦିଗରେ ଅସାବଧାନ ହେଉ ନାହଁ । ମୁଁ ଘରେ, ବାହାରେ, ରାସ୍ତାଘାଟରେ, ଦେଶ ବିଦେଶରେ, ଦିନ-ରାତିରେ ଓ କାୟ-ମନ-ବାକ୍ୟରେ କେବେ କେତେବେଳେ କ'ଣ ଯେ ଭୁଲଭ୍ରାନ୍ତି କରିଯାଉଛି, ତା'ର ଠିକଣା ନାହିଁ । ମାତ୍ର ଦେଖୁଛି, ଭୁଲ ହେବାମାତ୍ରେ ତୁମେ ତାକୁ ସୁଧାରିବା ପାଇଁ ପ୍ରସ୍ତୁତ । ଦାଗ ନ ଲାଗୁଣୁ ତୁମେ ତାକୁ ଧୋଇ ସଫା କରିଦେଉଛ ।

*ଅପରାଧ ମୋର ସ୍ୱଭାବ ତୁମେ କ୍ଷମା ସାଗର ।*
*ଅନାଦିକାଳରୁ ମୋ ପାପ କ୍ଷମୁଛ ନିରନ୍ତର ॥*

କିନ୍ତୁ ହେ ନାଥ ! ଗୋଟିଏ କଥା ପଗ୍ଚରୁଛି ଉତ୍ତର ଦିଅ। ମୁଁ ବାରମ୍ବାର ଅପରାଧ କାଳିମା ବୋଳି ହେଉଛି ଏବଂ ବାରମ୍ବାର ତୁମେ ତାକୁ ସଫା କରୁଛ କାହିଁକି ? ବରଂ ତା' ଅପେକ୍ଷା ମୁଁ ଯଦି ଆଦୌ ଅପରାଧ ନ କରନ୍ତି କ'ଣ ଭଲ ହୁଅନ୍ତା ନାହିଁ ? ତୁମେ କହିବ, 'ଅପରାଧ ନ କର, କିଏ କହୁଛି ଅପରାଧ କରିବାକୁ' ! କିନ୍ତୁ ହେ ପ୍ରଭୁ ! ସ୍ୱଭାବର ବଶବର୍ତ୍ତୀ ହୋଇ ମୁଁ ଅପରାଧ କରିଗ୍ଚଲିଛି। ଆହା ! ଏସବୁ ଜାଣିଶୁଣି ମଧ୍ୟ ମୋର ଦୟାଳୁ ପ୍ରଭୁ ମୋପରି ନଗଣ୍ୟକୁ ଧୋଇପୋଛି ସଫାସୁତୁରା ରଖିବାକୁ କେତେ ସାବଧାନ ଓ ସତତ ପ୍ରଯତ୍ନଶୀଳ ହେବାକୁ ବାଧ୍ୟ ହେଉଛନ୍ତି! ହେ ଦୟାମୟ ! ଏହା କେବଳ ତୁମରି କୃପାଦ୍ୱାରା ସମ୍ଭବ ହୋଇପାରିବ। ମୋର ତୁମ ନିକଟରେ ଏଇ କାତର ପ୍ରାର୍ଥନା ଯେ, 'ହେ ପ୍ରଭୁ ! ଆପଣାର ଅପାର କୃପାଶକ୍ତି ଦ୍ୱାରା ମୋର ଅପରାଧ-ସଂସ୍କାର ବୃକ୍ଷଟିକୁ ସମୂଳେ ଛେଦନ କରିଦିଅ, ଯଦ୍ଦ୍ୱାରା ସଦା-ସର୍ବଦା ମୋ ହୃଦୟ ମନ୍ଦିର ଏତେ ସ୍ୱଚ୍ଛ, ଏତେ ପବିତ୍ର ଏବଂ ଏପରି ସୁନ୍ଦର ହୋଇଯିବ, ଯେଉଁଥିରେ ତୁମେ ବିନା ବାଧାରେ ସୁଖପୂର୍ବକ ସଦା ବିରାଜିତ ହୋଇପାରିବ। ମୋର ଏହି ପ୍ରାର୍ଥନା ଅବଶ୍ୟ ପୂରଣ କରିଦିଅ, ହେ ମୋର ଦୟାର୍ଣ୍ଣବ ପ୍ରଭୁ !



(୧୨)

ହେ ମୋର ପ୍ରାଣର ଦେବତା !

ମୋ ଜାଗତିକ ଅଭାବର ସୀମା ନାହିଁ । ଅଭାବ କିପରି ଦୂର ହେବ ସେଥିପାଇଁ ମୁଁ ରାତି-ଦିନ ଲାଗି ରହିଛି । ଏସବୁ ଶୁଷ୍କକାର୍ଯ୍ୟ ବାଧ୍ୟ ହୋଇ କରିବାକୁ ପଡୁଛି । ଏଥିରେ ରାତି-ଦିନ କଟିଯାଉଛି, ଅଥଚ ସମୟ ଟିକିଏ ହେଉନାହିଁ ଏକାନ୍ତରେ ବସି ତୁମ କଥା ହେଲେ ଟିକିଏ ଭାବନ୍ତି, ତୁମ ଗୁଣାବଳୀ ଶ୍ରବଣ କରନ୍ତି, ଧ୍ୟାନରେ ତୁମକୁ ଡାକି ନିଜ ମନ କଥା ଶୁଣାନ୍ତି ଆଉ ତୁମଠାରୁ ଶୁଣନ୍ତି । ଖୁବ୍ ମନ ହୁଏ, କିନ୍ତୁ ଅଭାବ ପୂରଣର ଚେଷ୍ଟାରେ ସମୟ ଗ୍ଳିଯାଉଛି, କ'ଣ କରିବି ? ଯେଉଁ ବିଷୟ ସମ୍ପର୍କରେ ମୁଁ ଏତେ ଯତ୍ନଶୀଳ, ସେଇ ବିଷୟ ପ୍ରତି ସେପରି କିଛି ଆସକ୍ତି ବା ପ୍ରୀତି ନାହିଁ । ମନ ଯେ ତା ଭିତରକୁ ପ୍ରବେଶ କରିଯାଉଛି ବା ବିଷୟ ମନକୁ ଆକର୍ଷଣ କରୁଛି, ତା ବି ନୁହେଁ। ତେବେ ଏ ସବୁ ସତ୍ତ୍ୱେ ମୁଁ ସେହିଥିରେ ଲାଗି ରହିଛି କାହିଁକି ? ଭାବୁଛି, ଏ ସବୁ ତୁମ କରାମତି। ତୁମେ ବାଧ୍ୟ କରୁଛ ବୋଲି ମୁଁ ସେ ସବୁଥିରେ ଲାଗିଛି । ତେବେ ବାରମ୍ବାର ତୁମ ସ୍ମୃତି ଆସୁଛି । ମୁଁ ଭାବୁଛି, ତୁମ ସହିତ ଦେଖା ହୋଇଗଲେ ଏ ସମସ୍ତ ପ୍ରପଞ୍ଚର ଜଞ୍ଜାଳ ଅବଶ୍ୟ ତୁଟି ଯାଆନ୍ତା। ପ୍ରକୃତରେ ତୁମରି ମୁହଁକୁ ଅନେଇ ମୁଁ ତୁମ ସଂସାରରେ ଲାଗିରହିଛି। ହଁ, ଏହା ଅବଶ୍ୟ ମୋର ଭୁଲ୍ ହୋଇଯାଇଛି ଯେ, ତୁମର ଏଇ ସଂସାରକୁ ସଦା-ସର୍ବଦା ମୁଁ ତୁମଦ୍ୱାରା, ତୁମ ଆନନ୍ଦ ପାଇଁ, ତୁମ ମଧୁରତାରେ ପରିପୂର୍ଣ୍ଣ ହୋଇଥିବା ଦୃଷ୍ଟିରୁ ଦେଖୁନାହିଁ; ଯଦି ପ୍ରକୃତରେ ତୁମ ସହିତ ସଂଯୁକ୍ତ ଦୃଷ୍ଟିରୁ ଏ ସଂସାରକୁ ମୁଁ ଦେଖୁଥାଆନ୍ତି, ତେବେ ପ୍ରପଞ୍ଚ ଜଞ୍ଜାଳ ଆଉ ପ୍ରତୀତ ହୁଅନ୍ତା ନାହିଁ । ଏହା ସୁଖମୟ, ଆନନ୍ଦମୟ, ମଧୁମୟ ହୋଇଯାଆନ୍ତା। ମୁଁ ବୁଝୁଛି ଯେ, ଏ ସଂସାର ତୁମଠାରୁ ସୃଷ୍ଟ ଏବଂ ତୁମରି ଭିତରେ ବିଲୟ ପ୍ରାପ୍ତ। ଏହାକୁ

ତୁମଠାରୁ ଅଲଗାଭାବେ ଦେଖିବା ଉଚିତ ନୁହେଁ । ସେପରି ଦେଖିବା ଯଥାର୍ଥ ବି ନୁହେଁ । ସଂସାର ଭିତରେ ତୁମ ମାଧୁର୍ଯ୍ୟ, ତୁମ ସୌନ୍ଦର୍ଯ୍ୟ, ତୁମ ଐଶ୍ୱର୍ଯ୍ୟ, ତୁମ ଶାନ୍ତିକୁ ଦର୍ଶନ କରିବା ଆବଶ୍ୟକ । ତାହେଲେ ସିନା ସର୍ବତ୍ର ତୁମ ଦର୍ଶନ ସିଦ୍ଧ ହେବ ! ସତ କହିବାକୁ ଗଲେ ମୋ ପକ୍ଷେ ତାହା ସମ୍ଭବ ହୋଇପାରୁନି । ମୁଁ ଚବିଶ ଘଣ୍ଟା ସଂସାରରେ ରହୁଛି, ମାତ୍ର ଏ ସଂସାର ମୋତେ ପ୍ରତୀୟମାନ ହେଉଛି ଯେପରି ତୁମଠାରୁ ଅଲଗା ଏକ ଜଞ୍ଜାଳମୟ, ଯନ୍ତ୍ରଣାମୟ, ଛଳନା-ପ୍ରବଞ୍ଚନା ଓ କ୍ଲେଶପୂର୍ଣ୍ଣ ସଂସାର ପରି ।

ତୁମରି ଇଚ୍ଛାରେ ମୁଁ ଏ ସଂସାରରେ ଅଛି । ତୁମେ ଯଦି ଇଚ୍ଛା କରୁ ନ ଥାନ୍ତ, ମୁଁ ରହିଥାନ୍ତି ବା କିପରି ? କିନ୍ତୁ ମୋ ମନ ଚାହେଁ 'ମୁଁ ତୁମକୁ ପାଏ ଏବଂ ଏ ଜଞ୍ଜାଳ ଯନ୍ତ୍ରଣା ଦୂର ହୋଇଯାଉ' । କ'ଣ କରିବି ? 'ମୁଁ' ଏବଂ 'ମୋର' ମୋଠାରୁ ଅଲଗା ହୋଇପାରୁ ନାହାଁନ୍ତି ।

ହେ ମୋର ପ୍ରାଣର ଦେବତା ! ଏବେ ତୁମେ ଏହାର କୌଣସି ଉପାୟ ବତାଇଦିଅ ପ୍ରଭୁ । ଦୁଇଟିରୁ ଅନ୍ତତଃ ଗୋଟିଏ କାର୍ଯ୍ୟ କର । ହୁଏତ ଏ ସଂସାରରୁ ଅଲଗା କରି ମୋତେ ଏକାକୀ ତୁମ ସାନ୍ନିଧ୍ୟକୁ ନେଇଯାଅ, ନଚେତ୍ ସଂସାରର ପ୍ରତିଟି ଅଣୁ ପରମାଣୁରେ ସଦା-ସର୍ବଦା ମୋତେ ତୁମର ସେହି ସତ୍ୟ-ଶିବ-ସୁନ୍ଦର ସ୍ୱରୂପ ଦର୍ଶନ କରାଅ ପ୍ରଭୁ ! ତା'ହେଲେ ମୁଁ ଆଉ ତୁମକୁ ଆଦୌ ବ୍ୟସ୍ତ କରିବି ନାହିଁ, ହେ ମୋର ସ୍ୱାମୀ !



(୧୩)

ହେ ମୋର ପ୍ରାଣଧନ !

ତୁମର ମୋ ପ୍ରତି କେତେ ଯେ କୃପା, କେତେ ପ୍ରୀତି, କେତେ ସ୍ନେହପୂର୍ଣ୍ଣ ଆତ୍ମୀୟତା ସତେ ! ମୁଁ ତୁମକୁ ଭୁଲିଯିବା ପାଇଁ ଇଚ୍ଛା କରୁଛି, ଭୁଲି ଯାଉଛି ମଧ୍ୟ । ସୁତ, ବିତ୍ତ, ସ୍ତ୍ରୀ, ଭବନ ଆଦିର ମମତାରୂପୀ ରାତ୍ରିରେ ଗହନ ନିଦ୍ରାରେ ଶୋଇ ଘୁଙ୍ଗୁଡ଼ି ମାରୁଛି । ଜାଗତିକ ଧନ-ଜନ, ମାନ-ପ୍ରତିଷ୍ଠା, ପଦ-ଗୌରବର ରୌରବରେ ବୁଡ଼ିରହି ଏହାକୁ ହିଁ ଚରମ ସୁଖ ବୋଲି ସ୍ୱୀକାର କରୁଛି ଏବଂ ଭୁଲରେ ମଧ୍ୟ ତୁମକୁ କେବେ ସ୍ମରଣ କରୁନାହିଁ । ମାତ୍ର ତୁମେ ଏଡ଼େ ଚତୁର ବନ୍ଧୁ ଯେ, କୁଆଡୁ କିପରି ହଠାତ୍ ଆସି ମୋ ଆଗରେ ହାଜର ହୋଇଯାଉଛ । ଏପରି ଭୟାନକ ବେଶ ଧରି ତୁମେ ଆସୁଛ ଯେ, ମୁଁ ଡରି-ମରି ଛାନିଆଁ ହୋଇଯାଉଛି । ବିପଦ ସମୁଦ୍ରର ଉତ୍ତାଳ ତରଙ୍ଗ ଉଚ୍ଛୁଳି ଉଠୁଛି, ଘନ ଅନ୍ଧକାର ମାଡ଼ିଆସୁଛି, ଚାରିଆଡ଼କୁ ଚାହିଁଲେ ଭୀଷଣ ଅନ୍ଧାର, ମୁହଁକୁ ମୁହଁ ଦେଖାଯାଉ ନାହିଁ, ବିଜୁଳି ଚମକି ଉଠୁଛି, ଚାରିଆଡୁ ଶିଳା ବୃଷ୍ଟି । ବଡ଼ ଯତ୍ନରେ ତିଆରି କରିଥିବା ମୋ ଘର ଭାଙ୍ଗିରୁଜି ଚୂରମାର ହୋଇଯାଉଛି । ମୁଁ କାନ୍ଦେ, ଚିତ୍କାର କରେ; ସେତେବେଳେ କେହି ସହାୟକ ନ ଥାନ୍ତି । ଯେଉଁ ସାଂସାରିକ ସମ୍ପତ୍ତିକୁ ମୁଁ ସୁଖ-ଶାନ୍ତି ବୋଲି ବୁଝି ତନ୍ମୟ ହୋଇଯାଉଥିଲି, ସେହି ସମଗ୍ର ସମ୍ପତ୍ତି, ଧନ, ମାନକୁ ପଲକ ମାତ୍ରକେ ଅପହରଣ କରି ଭୀଷଣରୂପ ଧରି ମୋତେ ଭୟ ଦେଖାଉଛ । ଥରେ ଥରେ ମୁଁ ବିରକ୍ତ ହୋଇଛି, ମୋ ମୁହଁରୁ ବାହାରି ପଡିଛି, "ତୁମେ ବଡ଼ ଅନ୍ୟାୟୀ, ଅତ୍ୟାଚାରୀ । ମୋର ସୁନ୍ଦର ଟିକି ବଗିଚାର ସବୁଜିମାକୁ ତୁମେ ସହିପାରିଲନି । କ୍ଷଣକ ମଧ୍ୟରେ ତାକୁ ଉଜାଡ଼ି ଦେଲ । ମୋ ପାଇଁ ସତେ ଯେପରି ମହାପ୍ରଳୟ ହୋଇଗଲା । ମୋ ଧନ, ଯଶ, ମାନ-ସମ୍ମାନ, ମୋର ଘରଦ୍ୱାର, କୁଟୁମ୍ବ ସବୁକିଛି

ଛିନ୍‌ଛତ୍ର କରି ତୁମେ ନେଇଗଲ । ତୁମେ ବଡ଼ କ୍ରୂର, ତୁମେ ବଡ଼ ନିର୍ଦ୍ଦୟ, ତୁମେ ବଡ଼ ସ୍ୱେଚ୍ଛାଚାରୀ'' । ମାତ୍ର ଏହି ବ୍ୟାକୁଳତାରେ, ଏହି ଘନ ଅନ୍ଧକାର ଭିତରେ ତୁମର ସ୍ନିଗ୍‌ଧ ମଧୁର ନଖଜ୍ୟୋତିର ସ୍ମିତ ସୁଧାମୟୀ କିରଣଛଟା ଦେଖିବାକୁ ପାଇଲି । ଚାହୁଁ ଚାହୁଁ ତୁମର ନିତ୍ୟ ସୁନ୍ଦର, ନିତ୍ୟ ମଧୁର ପ୍ରେମୋଜ୍ଜ୍ୱଳ ପ୍ରସନ୍ନ ମୂର୍ତ୍ତି ପ୍ରକଟିତ ହେଲା, ତୁମେ ଅତ୍ୟନ୍ତ ମଧୁର ବେଶ ଧାରଣ କରି ସ୍ମିତ ସୁନ୍ଦର ପ୍ରଫୁଲ୍ଲ ବଦନରେ ସ୍ନେହପୂର୍ଣ୍ଣ ମଧୁର ଦୃଷ୍ଟିରେ ମୋ ଆଡ଼କୁ ଚାହିଁ ମୋ ଚିବୁକରେ ହଠାତ୍ ନିଜର କୋମଳ କରସ୍ପର୍ଶ କରି ମୋତେ ସାନ୍ତ୍ୱନା ଦେବାକୁ ଲାଗିଲ । କହିଲ—''ତୁମେ ମୋତେ ତ ଭୁଲି ଯାଇଥିଲ ଭାଇ ! କାହିଁ କେଉଁ ପ୍ରତିକୂଳ ପ୍ରବାହରେ ଭାସିଯାଉଥିଲ ତୁମେ । ତୁମେ ଦୁଃଖକୁ ସୁଖ ବୋଲି ଭାବି ନେଇଥିଲ, ପତନକୁ ମଧ୍ୟ ତୁମର ବୁଦ୍ଧି ଉତ୍‌ଥାନ ବୋଲି ଭ୍ରମରେ ଭାବୁଥିଲ । ନର୍କର ଅନଳରେ ଦଗ୍‌ଧ ହେବାକୁ ଯାଉଥିଲ, ଅଥଚ ଭାବୁଥିଲ ଅତି ସହଜରେ ସୁନ୍ଦର ସ୍ୱର୍ଗସୁଖ ତୁମକୁ ମିଳିଯିବ । ମୁଁ ଏ ସବୁ ସହିପାରିଲି ନାହିଁ । ମୁଁ ତୁମର ଏହି ଭ୍ରମ ଦୂର କରିବାକୁ ଏସବୁ କରିଛି । ତୁମେ ମୋର ଅତି ଆପଣାର ଭାଇ ! ତୁମେ ସିନା ଭୁଲିଯାଉଛ, ମୁଁ କେମିତି ଭୁଲିଯିବି ? କିପରି ବା ତୁମକୁ ଦୁଃଖ-ସାଗରରେ ବୁଡ଼ିଯିବାକୁ ଖୋଲା-ଖୋଲି ଛାଡ଼ିଦେବି ?'' ଏପରି କହି ତୁମେ ମୋତେ ଛାତିରେ ଆଉଜେଇ ନେଲ । ମୋର ସମସ୍ତ ବିଷାଦ ଦୂର ହୋଇଗଲା, ମୁଁ କୃତାର୍ଥ ହୋଇଗଲି । ତୁମପରି ସୁହୃଦଙ୍କୁ ଦେଖି ମୁଁ ନିଜକୁ ଧନ୍ୟ ମନେକଲି ।

ହେ ମୋର ସ୍ୱାମୀ ! ତୁମ ଚରିତ୍ର ବଡ଼ ବିଚିତ୍ର ! ସମସ୍ତେ ସଫଳତାର ସାଥୀ, ସଫଳତାର ପୂଜାରୀ, କିନ୍ତୁ ତୁମେ ଅସଫଳତାରେ ଆତ୍ମୀୟତା ପ୍ରକଟ କର । ପୁଣ୍ୟରେ ଭାଗନେବାକୁ ସମସ୍ତେ ଆଗ୍ରହୀ, ପାପରେ ନୁହେଁ । କିନ୍ତୁ ତୁମେ ପାପୀକୁ ଆଲିଙ୍ଗନ କର, କାରଣ ତୁମେ ପରା ପତିତପାବନ ! ଏ ସଂସାରରେ ସତୀ-ସାଧ୍ୱୀଙ୍କୁ ସମସ୍ତେ ସମ୍ମାନ ଦେଖାନ୍ତି, କୁଳଟାକୁ କିଏ ପଚାରେ ? ତୁମେ ଏପରି ପ୍ରଭୁ ଯେ, କୁଳଟା

କଳଙ୍କିନୀକୁ ଆଦର କର, ବ୍ୟଭିଚାରିଣୀକୁ ତୁମେ ପ୍ରେମ ମାଧ୍ୟମରେ ସତୀ-ସାଧ୍ୱୀ କରିପାର । ମୋ ଅବସ୍ଥା ସମ୍ପର୍କରେ ମୁଁ ଏବେ ସଚେତନ । ଦୟା କରି ତୁମେ ମୋ ଆଖି ଖୋଲିଦେଇଛ । ସେତେବେଳେ ମୁଁ ଭୁଲିଯାଇଥିଲି । ମୋର ବହିର୍ମୁଖୀ ଆତ୍ମଘାତୀ ଇନ୍ଦ୍ରିୟମାନଙ୍କୁ ଓ ହୀନ ମନକୁ ପରିପୁଷ୍ଟ କରିବା ପାଇଁ, କେତେ ଯେ ବିଷକୁମ୍ଭପୟୋମୁଖୀ ପଦାର୍ଥମାନଙ୍କର ଶରଣ ନେଇଥିଲି ! ତୁମେ କୃପା କରି ମୋତେ ବଜ୍ରପରି ଏ ବେଦନା ଦେଇ ପ୍ରବୋଧିତ ନ କରିଥିଲେ କେଉଁ ଭୀଷଣ ନର୍କର କଠୋର ଯନ୍ତ୍ରଣା ଭୋଗ କରିଥାଆନ୍ତି, ତାହାର ଠିକଣା ନାହିଁ ।

ତୁମ ଉପକାର ପାଇଁ କୃତଜ୍ଞତା କେଉଁ ଭାଷାରେ ଜଣାଇବି ପ୍ରଭୁ ! ତଥାପି ଗୋଟିଏ କଥା ପଚାରୁଛି, ଯଦି ମୋ ପ୍ରତି ତୁମର ଏତେ ଅପରିମିତ ପ୍ରେମ, ରାସ୍ତାର ଏହି ନଗଣ୍ୟ ଧୂଳିକଣାଟି ପ୍ରତି ଯଦି ଏତେ ଅନୁକମ୍ପା, ତା'ହେଲେ କାହିଁକି ସବୁଦିନ ପାଇଁ ନିଜ ଚରଣରେ ସ୍ଥାନ ଦେଉନାହଁ? ଏତେ ଭୁଲ ଭ୍ରାନ୍ତିରେ କାହିଁକି ଘୂରାଉଛ ? କାହିଁକି ଏତେ ବିଭ୍ରାନ୍ତି ? କାହିଁକି ? ମୋତେ କୃପା କର ନାଥ ! ମୁଁ ବହୁତ ଭୋଗିଲିଣି, ଏବେ ଚିରଦିନ ପାଇଁ ମୋତେ ତୁମର ଚରଣରଜ କରି କୃତାର୍ଥ କରିଦିଅ । ତୁମ ଶ୍ରୀଚରଣାରବିନ୍ଦରେ ମୋର ଏତିକି ମାତ୍ର ଆର୍ତ୍ତ ପ୍ରାର୍ଥନା ।



(୧୪)

ଶ୍ୟାମସୁନ୍ଦର !

ମୋର କେଉଁ କଥା ବା ତୁମ ନିକଟରେ ଲୁଚି ରହିଛି ? ଜୀବନରେ କ'ଣ କ'ଣ କଲି, କିପରି ଭାବେ ସୁକର୍ମ-ଦୁଷ୍କର୍ମର ପ୍ରବାହ ଆସିଲା, ସବୁ ତୁମକୁ ଜଣା । ଭକ୍ତି, ଜ୍ଞାନ, ବୈରାଗ୍ୟର ଚର୍ଚ୍ଚା ତ ବହୁତ କଲି-ଶୁଣିଲି । କିନ୍ତୁ ସବୁ ଥିଲା କେବଳ ନାଟକରେ ଅଭିନୟ କରିବାପରି । କେବେ କେମିତି ମନ ଭିତରେ ଭକ୍ତି ଭାବନା, ତୁମ ପ୍ରତି ପ୍ରେମ ଭାବର ଆଗ୍ରହ ହେବାପରି ଲାଗିଲା, ମାତ୍ର ତାହା ଫଳବତୀ ହୋଇପାରିଲା ନାହିଁ । କିପରି ବା ହୁଅନ୍ତା ? ସେପରି ଇଚ୍ଛାରେ ମୋର କେତେ ମାନ୍ଦା-ମାନ୍ଦା ଭାବନା ଥିଲା ଏବଂ ଭୋଗ-ଲାଳସା କେତେ ତୀବ୍ର ଓ ବଳବାନ୍ ଥିଲା, ସେସବୁ ଗୋଟି-ଗୋଟି କରି ତୁମେ ପରଖି ଦେଖିଛ । କେହି-କେହି ମୋତେ ଭକ୍ତଭାବେ ମାନନ୍ତି, ଭଗବତ୍‌ପ୍ରେମୀ ବୋଲି କୁହନ୍ତି ଏବଂ ମୁଁ ଦୁଷ୍ଟବୁଦ୍ଧି ସେ ସବୁକୁ ମୁହଁରେ ଅସ୍ୱୀକାର କରୁଥିଲେ ମଧ୍ୟ ହାବଭାବରେ, ଶବ୍ଦଜାଲରେ ସ୍ୱୀକାର କରି ନେଉଥିଲି । ଏ ମୋର କେଡ଼େ ବଡ଼ ଭୁଲ ସତେ ! ଏପରି ମିଥ୍ୟା ଅଭିମାନର କ'ଣ କିଛି ସୀମା ସରହଦ ଅଛି ? ଯାହା ହୃଦୟରେ ପ୍ରେମ ବା ଭକ୍ତିର ଗନ୍ଧ ବି ଲେଶମାତ୍ର ନାହିଁ, ସେ ନିଜକୁ ଭକ୍ତ ଓ ପ୍ରେମୀ ବୋଲି ପ୍ରଗ୍ରର କରୁଛି! ଏହାଦ୍ୱାରା ହେ ପ୍ରଭୁ ! ମୁଁ ପାପାତ୍ମା ତୁମ ଭକ୍ତ ଓ ପ୍ରେମୀମାନଙ୍କ ନାମରେ କଳଙ୍କ ଲଗାଇଛି । ଯେଉଁ ମନ ନାନାପ୍ରକାର ପ୍ରଲୋଭନରେ ପରିପୂର୍ଣ୍ଣ, ଯେ କାମନା ବାସନାର କ୍ରୀତଦାସ, ଏପରି ମନକୁ ନେଇ କେହି କେବେ କ'ଣ ଭକ୍ତ ବା ପ୍ରେମୀ ହୋଇପାରେ ? କି ବିଡ଼ମ୍ବନା ପ୍ରଭୁ ! ବେଳେବେଳେ ମନରେ ଆସେ, ତୁମକୁ ପ୍ରାର୍ଥନା ବି କରେ 'ହେ ପ୍ରଭୁ ! ମୋତେ ତୁମ ପ୍ରକୃତ ଭକ୍ତି ଓ ପ୍ରେମ ଦାନ କର ।' କେବେ କେବେ ମୋର ଏହି ଦାମ୍ଭିକତାପୂର୍ଣ୍ଣ ଜୀବନ ଉପରେ ଘୃଣା ଆସେ, ତାକୁ ଧିକ୍କାର ମଧ୍ୟ କରେ । କିଛି ସମୟ ଧରି ଲୋକଙ୍କୁ କହେ, ଅହର୍ନିଶି

ମନରେ ଭଗବାନଙ୍କ ଚିନ୍ତନ, ଭଗବାନଙ୍କ ନାମ ସ୍ମରଣ ତଥା ଜିହ୍ୱାରେ ଭଗବାନଙ୍କ ନାମଜପ କର; ଅଥଚ ମୁଁ ନିଜେ କେତେ କ'ଣ କରୁଛି, ତାହା ତ ତୁମ ନିକଟରେ ଲୁଚିନାହିଁ ।

ବେଳେବେଳେ ତୁମର ମୋ'ପରି ନୀଚ୍ରତିନୀଚ ପରମ ଅଧମ ଉପରେ ଏତେ କୃପା ଦେଖି ଆଶ୍ଚର୍ଯ୍ୟ ଲାଗେ, ଜଣାପଡ଼େ ଏହା ତୁମର ସ୍ୱଭାବ । ଗୋସ୍ୱାମୀ ତୁଳସୀ ଦାସ ଠିକ୍ କହିଛନ୍ତି 'ପ୍ରଭୁ ମୂରତି କୃପାମୟୀ' । ତୁମର ଏହା ସ୍ୱଭାବ ବୋଲି ଏଇକଥା କହି, ଶୁଣି ଓ କେବେ କେମିତି ଅନୁଭବ କରି ମଧ୍ୟ ତୁମ ଶ୍ରୀଚରଣର ଧୂଳି ବି ହୋଇପାରୁ ନାହିଁ କି ସଦା-ସର୍ବଦା ତୁମର ସେହି ଅରୁଣ ଚରଣକମଳରେ ଲୋଟି ଯାଇପାରୁ ନାହିଁ । କେତେ ବଡ଼ ପାଷାଣ୍ଡ ମୁଁ ସତେ ? ତୁମର ଏଇ ସହଜ ସ୍ୱାଭାବିକ କୃପାର ମଧ୍ୟ ମୁଁ ଦୁରୁପଯୋଗ କରୁଛି; ଏପରି ଚେଷ୍ଟା କରୁଛି ଯାହାଦ୍ୱାରା କି ଲୋକଙ୍କ ମନରେ ଧାରଣା ହେବ ସତେ ଯେପରି ମୁଁ ଭଗବାନଙ୍କ କୃପାର ଅନନ୍ୟ ଆଶ୍ରିତ ।

ଏସବୁ ସତ୍ତ୍ୱେ ତୁମ ଅଯାଚିତ କୃପାର ସାମାନ୍ୟତମ ଅଭାବ ନାହିଁ, ବରଂ ତାହା ଦିନକୁ ଦିନ ବଢ଼ିଚ୍ଲିଛି । ଏଇ ଅପ୍ରାର୍ଥିତ କୃପା ଉପରେ ହିଁ ଏଇ ପତିତାଧମ ଭରସା କରିଛି ପ୍ରଭୁ ! ତୁମେ ଏଇ ଅକିଞ୍ଚନ ପ୍ରତି ସଦା-ସର୍ବଦା କୃପା ପ୍ରଦର୍ଶନ କରିଆସିଛ, କରୁଛ ଓ କରିଚ୍ଲିବ । ତୁମେ କୃପା କରିବା ବିନା ରହିପାରିବ ନାହିଁ, କାରଣ କୃପାପରବଶତା ହିଁ ତୁମ ସ୍ୱଭାବ ।

ହେ ନାଥ ! ତୁମ କୃପା ଉପରେ ମୋର ଏଇ ଯେଉଁ ବିଶ୍ୱାସ, ତାହା ଯେପରି କମ୍ ନ ହେଉ, ବରଂ ବୃଦ୍ଧିପାଉ, ଏହା ହିଁ ପ୍ରାର୍ଥନା । ପ୍ରଭୁ ! ମୋର ମନ୍ଦଚିନ୍ତା ପ୍ରତି ତ ତୁମେ କେବେ ଧ୍ୟାନ ଦେଇନ, ତେବେ କେବେ କେମିତି ମୁହୂର୍ତ୍ତକ ପାଇଁ ଯଦି ସଚ୍ଚୋଟ ଭାବେ ମୁଁ ବିଷୟରୁ ବିରାଗୀ ହୋଇ ତୁମ ଭକ୍ତି ଓ ପ୍ରେମର ଇଚ୍ଛା କରୁଛି, କେବଳ ତାକୁ ହିଁ ଧରିରଖି ପରିପୂର୍ଣ୍ଣ କରିଦିଅ—ଏହା ହିଁ ବିନମ୍ର ପ୍ରାର୍ଥନା ।



(୧୫)

ତୁମେ କିପରି କ'ଣ, କିଏ ବା ଜାଣିଛି ? ଲୋକେ ବିଭିନ୍ନ ପ୍ରକାରରେ ତର୍କ କରନ୍ତି । ପ୍ରତ୍ୟକ୍ଷ, ଅନୁମାନ ଏବଂ ଶବ୍ଦ-ପ୍ରମାଣ ଦ୍ୱାରା ତୁମ ତତ୍ତ୍ୱ ସ୍ୱରୂପକୁ ସ୍ଥାପନା କରନ୍ତି, ତଥାପି ତୁମ ଯଥାର୍ଥ ସ୍ୱରୂପକୁ ତର୍କରେ କ'ଣ ଉପଲବ୍‌ଧି କରିହୁଏ ? ତୁମେ ତ ତର୍କର ବହୁ ଉର୍ଦ୍ଧ୍ୱରେ ।

ଏସବୁ ସତ୍ତ୍ୱେ ତୁମେ ମୋର, ଏହା ତ ପରମ ସତ୍ୟ । ମୁଁ ତୁମକୁ ଜାଣିଛି ଏବଂ ତୁମେ ମୋତେ ନିଶ୍ଚୟ ଜାଣ । ନିର୍ଜନ ରାତ୍ରିରେ ଯେତେବେଳେ ସମଗ୍ର ଜଗତ ସୁପ୍ତ ଥାଏ, ଆକାଶର ଭସାଭସା ବଉଦ କୋଳରୁ ଯେତେବେଳେ ଚନ୍ଦ୍ରମାର ମଧୁର ଜ୍ୟୋତ୍ସ୍ନା ଲୁଚିଛପି ନିଜର ସ୍ନିଗ୍‌ଧ ସୁନ୍ଦର ସ୍ୱରୂପ ଦେଖାଏ, ସେତିକିବେଳେ ହେ ମୋର ପ୍ରାଣର ପ୍ରକାଶ ! ତୁମରି ମଧୁର ସ୍ମୃତି ଜାଗ୍ରତ ହୁଏ । ସେହି ମୁଗ୍‌ଧ ମଧୁର ମୋହିନୀ ସ୍ମିତହାସ୍ୟ, ସେହି ଏକାନ୍ତରେ କ୍ରୀଡ଼ା, ସେହି ନିତ୍ୟ ମଧୁମୟୀ ଆନନ୍ଦର ସଘନ ଲୀଳା ପ୍ରକାଶର ସ୍ମରଣରେ ମୁଁ ଆତ୍ମବିଭୋର ହୁଏ । ନିଜକୁ ଭୁଲିଯାଏ, ସେତେବେଳେ କୌଣସି ବିଗ୍ରହ-ବିତର୍କର ସ୍ଥାନ ନ ଥାଏ । ସମଗ୍ର ଦାର୍ଶନିକ ସିଦ୍ଧାନ୍ତର ବିଭିନ୍ନ ଧାରାମାନ ସେ ସମୟରେ ମୋର ଆନନ୍ଦ-ଅମୃତର ମହାନ ଧାରା ସହ ବିଲୀନ ହୋଇ ବହିଯାଏ ।

ହେ ମୋର ଅନ୍ତର ଆତ୍ମା ! ଏହା ତୁମର ଅତୁଳନୀୟ ଅଚିନ୍ତ୍ୟ ଲୀଳା । ମୁଁ ମୋର ଏହି ଅନୁଭୂତିର ଗୌରବ ନେଇ କ'ଣ କରିବି ? ସାରା ଗୌରବ ତ ତୁମର । ମୁଁ ତୁମର ଏହିପରି ଯେଉଁ ଲୀଳାବଳୀ ଦେଖି-ଦେଖି ନିତ୍ୟ ମୁଗ୍‌ଧ ହୋଇଯାଏ, ସେଥିରେ ବା ମୋର କ'ଣ ଅଛି ? ଏହା ମଧ୍ୟ ତୁମ କୃପାର ମହିମା । ଲୋକେ ବିଭିନ୍ନ ରସ ମାଧ୍ୟମରେ ତୁମ ଉପାସନା କରନ୍ତି । ସେମାନେ ସେହି ସେହି ରସର ଆଶ୍ରୟ ଏବଂ ତୁମେ ଉକ୍ତ ରସର ବିଷୟ । ପରନ୍ତୁ ହେ ରସମୟ ! ରସ ତ କେବଳ ତୁମେ । ତୁମେ ରସର ଆଶ୍ରୟ ଏବଂ ତୁମେ ମଧ୍ୟ ବିଷୟ । ଏସବୁ ସତ୍ତ୍ୱେ ତୁମେ ମଧ୍ୟ ହେଉଛ

ଲୀଳା ରସମୟ୍। ଏଣୁ ତୁମେ ଅଛ ଓ ମୁଁ ଅଛି। ନଚେତ୍ ସବୁକିଛି ହିଁ ତୁମେ । ରସିକେନ୍ଦ୍ର ଶିରୋମଣି ! ପ୍ରତ୍ୟେକ ରସରେ ଯେପର୍ଯ୍ୟନ୍ତ ତୁମେ ଦେଖା ନ ଦେଇଛ, ସେପର୍ଯ୍ୟନ୍ତ ତୁମର ପତ୍ତା ମିଳେ ନାହିଁ କିମ୍ବା ମୋତେ ମୋ ପରିଚୟ୍ ମଧ୍ୟ ମିଳେ ନାହିଁ । ମୁଁ କିଏ ? ଏହା ଜାଣିବା ପୂର୍ବରୁ ବୁଝିବା ଦରକାର ଯେ ତୁମେ କିଏ ? ମାତ୍ର ହେ ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ-ସୁଧାରସର ଅନନ୍ତ ଅସୀମ ଅପରିମେୟ୍ ମହାର୍ଣ୍ଣବ ! ଯେତେବେଳେ ପ୍ରତିଟି ରସରେ ତୁମକୁ ଦର୍ଶନ କରି ମୁଁ ତୁମ ଭିତରେ ମୋର ଅନୁସନ୍ଧାନ କରିବାକୁ ଲାଗେ, ସେତେବେଳେ ଆନନ୍ଦ ରସସାଗରର ପ୍ରତିଟି ତରଙ୍ଗରେ ମୋର ଅନୁସନ୍ଧାନର ପ୍ରୟାସ ଚରିତାର୍ଥ ହୋଇଉଠେ। ସେତେବେଳେ ଏପରି ପ୍ରତ୍ୟକ୍ଷ ଅନୁଭୂତି ହୁଏ ଯେ, ତୁମ ଓ ମୋ ଭିତରେ ଏକ ନିତ୍ୟ ଅଖଣ୍ଡ ଅତୁଟ ମଧୁର ରସପୂର୍ଣ୍ଣ ସମ୍ବନ୍ଧ ଅଛି। ସମ୍ବନ୍ଧର ପ୍ରତ୍ୟକ୍ଷ ଅନୁଭବ ହେବା ସଙ୍ଗେ-ସଙ୍ଗେ ସାରା ବିଶ୍ୱକୁ, ବିଶ୍ୱର କାରଣକୁ ଏବଂ ନିଜକୁ ଭୁଲିଯାଏ । ସବୁ ତୁମ ଭିତରେ ବିଲୀନ ହୋଇଯାଏ । ହେ ମୋର ନିତ୍ୟ ସତ୍ୟ, ନିତ୍ୟ ମଙ୍ଗଳମୟ୍, ନିତ୍ୟ ମଧୁର, ନିତ୍ୟ ସୁନ୍ଦର ରସର ଘନୀଭୂତ ବିଗ୍ରହ ! ମୁଁ ସର୍ବଦା ତୁମର ଏବଂ ତୁମେ ସର୍ବଦା ମୋର। ତୁମ ସହିତ ମୋର ଏହି ସମ୍ବନ୍ଧ ସର୍ବଦା ନିତ୍ୟଯୁକ୍ତ। ଏହି ବିଶ୍ୱାସ ଅଛି ଏବଂ ଏହି ବିଶ୍ୱାସ ଯେପରି ନିତ୍ୟ ସତ୍ୟ ସିଦ୍ଧ ହୁଏ, ଏହା ହିଁ ତୁମ ନିକଟରେ ହୃଦୟ୍ର ବିନୀତ ପ୍ରାର୍ଥନା।



ହେ ମୋର ପ୍ରଭୁ !

ମୁଁ ଜାଣୁଛି, ତୁମେ ଆନନ୍ଦମୟ, ଜ୍ଞାନମୟ ଏବଂ ଜ୍ୟୋତିର୍ମୟ ସ୍ୱରୂପ । ଯାହାକିଛି ଦୁଃଖ, ଅଜ୍ଞାନ ଏବଂ ଅନ୍ଧକାର ଭୋଗିବାକୁ ହୁଏ, ତାହା କେବଳ ତୁମକୁ ଭୁଲିଯିବା ଦ୍ୱାରା, ତୁମକୁ ଛାଡ଼ିଦେବା ଦ୍ୱାରା ବା ତୁମକୁ ଆଡୁଆଳ କରି ପଛରେ ପକାଇବା ଦ୍ୱାରା ହୁଏ । ମୁଁ ଜାଣେ ଯେ, ଦୀପ ଶିଖା ଆଡ଼କୁ ଧାବମାନ ପତଙ୍ଗ ପରି ତୀବ୍ର ବେଗରେ ମୁଁ ମୃତ୍ୟୁ ଆଡ଼କୁ ଦୌଡ଼ି ଚାଲିଛି । ଜାଣୁଛି ଯେ ଏଠାରୁ ନିଶ୍ଚୟ ଦିନେ ନା ଦିନେ ଚାଲିଯିବାକୁ ହେବ । ଏଠିକାର କିଛି ଆପଣାର ନୁହେଁ, କିଛି ବି ସାଙ୍ଗରେ ଯିବ ନାହିଁ । ଏହା ମଧ୍ୟ ଜାଣୁଛି ଯେ ତୁମକୁ ସ୍ମରଣ କଲେ, ତୁମ ଆଡ଼କୁ ଜୀବନର ମୋଡ଼ ବଦଳାଇ ଦେଲେ, ସୁଖଶାନ୍ତି ଆପେ-ଆପେ ଆସେ । ଏସବୁ ଜାଣିବା ସତ୍ତ୍ୱେ ତୁମ ଆଡ଼କୁ ଏ ଜୀବନର ଗତି ପରିବର୍ତ୍ତିତ ହେଉନାହିଁ । ତୁମ ସ୍ମୃତି ଅନ୍ୟ ସମସ୍ତ ଜାଗତିକ ସ୍ମୃତିକୁ ତୁରନ୍ତ ଆତ୍ମସାତ୍ କରିପାରୁ ନାହିଁ । ଏହା କାହିଁକି ହେଉଛି ପ୍ରଭୁ !

ଏଠାକାର ଧନ-ଐଶ୍ୱର୍ଯ୍ୟ, ମାନ-ସମ୍ମାନ, ପଦ-ଅଧିକାର ମୋର କି କାର୍ଯ୍ୟରେ ଲାଗିବ ? ଦଶମିନିଟ୍ ପରେ ଯାହାକୁ ଫାଶୀଖୁଣ୍ଟରେ ଝୁଲିବାକୁ ପଡ଼ିବ, ତାକୁ ତ୍ରୈଲୋକ୍ୟର ଐଶ୍ୱର୍ଯ୍ୟ ଦାନ କଲେ ମଧ୍ୟ ସେଥିରୁ ସେ କି ତୃପ୍ତି ଲାଭ କରିବ ? ସେହିପରି ମୃତ୍ୟୁ ମୁହଁର ଶିକାର ହୋଇ ମଧ୍ୟ ମୁଁ ସମ୍ପୂର୍ଣ୍ଣ ଭାବେ ତୁମରି ଚିନ୍ତନ ନ କରି କ୍ଷଣବିନାଶୀ ବିଷୟ ଚିନ୍ତା କରୁଛି । ଏହା କେମିତି କଥା ? ତେବେ କ'ଣ ମୁଁ ତୁମକୁ ପାଇବାକୁ ଚାହୁଁ ନାହିଁ ? ମୁଁ କ'ଣ ତୁମକୁ ଛାଡ଼ି ରହିବାକୁ ଇଚ୍ଛା କରୁଛି ? ଏହା ତ ସମ୍ଭବ ନୁହେଁ । ମୁଁ ଯଦି ତୁମକୁ ପ୍ରାପ୍ତ ହୁଏ, ତେବେ ଜଗତରେ ଆଉ ଏପରି କ'ଣ ବସ୍ତୁ ଅଛି ଯାହାକୁ ମୁଁ ଚାହିଁବି ? ତୁମେ କ'ଣ ଏକଥା ଜାଣିନାହଁ ସ୍ୱାମୀ । ମୋ ପ୍ରାର୍ଥନା ଶୁଣ ପ୍ରଭୁ ! ବିନା ବେତନରେ ତୁମ ଶ୍ରୀଚରଣରେ ଦାସ କରି ରଖ । ମୁଁ ସତ କହୁଛି, ମୁଁ ଇହଲୋକ ବା ପରଲୋକର କୌଣସି ପଦାର୍ଥ ମାଗିବି ନାହିଁ । ମୋକ୍ଷ ମଧ୍ୟ ଇଚ୍ଛା କରିବି ନାହିଁ । ମୁଁ ତ କେବଳ ତୁମକୁ ଚାହେଁ ପ୍ରଭୁ ! ତୁମର ସେହି ମଧୁର ମନୋହର ରୂପ-ମାଧୁର୍ଯ୍ୟ, ତୁମରି ସେହି ମନ୍ଦ୍ର-ମଧୁର ମନୋହର ମୁରଲୀ ଧ୍ୱନି, ତୁମରି ସେହି ମଧୁର ସାନ୍ତ୍ୱନା ସ୍ୱଭାବ ଏବଂ ତୁମରି ଅପ୍ରତିମ, ଅଚିନ୍ତ୍ୟାନନ୍ତ ମଧୁର ମନୋହର ଗୁଣାବଳୀ ମୋ ମନକୁ ବାରମ୍ବାର ଆକର୍ଷଣ କରୁଛି । କୃପା କରି ମୋତେ ସେ ସବୁର ପ୍ରତ୍ୟକ୍ଷ ସାକ୍ଷାତ୍କାର କରାଇ ଦିଅ, ମୋର ଅନ୍ତର୍ଯ୍ୟାମୀ ପ୍ରଭୁ ! କୃପା କର !!



( ୧୭ )

ହେ ମୋର ସର୍ବଶକ୍ତିମାନ ସ୍ୱାମୀ !

ଏହା ସତ ଯେ ସବୁ ଜୀବ ଉପରେ ତୁମ ଦୟା ସମାନ ଏବଂ ଏହା ଅସୀମ । ମାତ୍ର ମୁଁ ଏଡ଼େ ଅଭାଗା ଯେ ତୁମର ଏଇ କରୁଣାମୃତ ବର୍ଷାଧାରାରେ ନିଜେ ସ୍ନାନ କରିପାରୁନାହିଁ । ଅବଶ୍ୟ ମୋ ମନର ଅନୁକୂଳ କାର୍ଯ୍ୟ ହେଲେ ତାହା ତୁମରି ଦୟା ବୋଲି କେବେ କେବେ ସ୍ୱୀକାର କରିନେଉଛି; ମାତ୍ର ପ୍ରତିକୂଳ ହେଲେ କେବେ ବି ମାନିବାକୁ ପ୍ରସ୍ତୁତ ନୁହେଁ । ଏହା ମଧ୍ୟ ଜାଣେ ଯେ ତୁମ କୃପା ଦୁଇ ରୂପରେ ଆସେ ଏବଂ ମୋ କଲ୍ୟାଣ ନିମନ୍ତେ ହିଁ ଆସେ । ମାତ୍ର ପ୍ରତିକୂଳତା ରୂପରେ ଆସିଲେ ମନ ଏହାକୁ ସ୍ୱୀକାର କରିପାରେ ନାହିଁ । ପ୍ରଭୁ ! ସେଦିନ କେବେ ଆସିବ ଯେଉଁ ଦିନ କି ମୁଁ ଅନୁକୂଳତା ଓ ପ୍ରତିକୂଳତା ଉଭୟକୁ ତୁମରି କୃପାସୁଧା ଭାବେ ଅନୁଭବ କରି ବଡ଼ ଆନନ୍ଦର ସହିତ ପାନ କରିବି ? କେବେ ମୁଁ ମାନ-ଅପମାନ, ତିରସ୍କାର, ପ୍ରଶଂସା-ନିନ୍ଦା, ଲାଭ-ହାନି, ସୁଖ-ଦୁଃଖ ଏବଂ ଜୀବନ-ମରଣ ସବୁଥିରେ ତୁମ କୃପା ଦର୍ଶନ କରି ପରମ ଶାନ୍ତି ଓ ସନ୍ତୋଷ ଅନୁଭବ କରିବି ?

ହେ ମୋର ପ୍ରଭୁ ! ଏବେ ଏକଥା ମନେ ପଡ଼ିଲେ ଅତ୍ୟନ୍ତ ଯନ୍ତ୍ରଣା ଅନୁଭବ କରୁଛି ଯେ, ମୁଁ ତୁମର ବୋଲି କହି ମଧ୍ୟ ବସ୍ତୁତଃ ନିଜକୁ ତୁମର ଭଳି ପ୍ରସ୍ତୁତ କରିପାରିଲି ନାହିଁ । ଦେଖୁଛି, ସ୍ପଷ୍ଟଭାବେ ଦେଖିପାରୁଛି ଯେ ମୋ ଉପରେ ଏବେ ବି ବିଷୟର ପ୍ରଭାବ ରହିଛି । ବେଳେ ବେଳେ ଅତି କଦର୍ଯ୍ୟ ଭାବେ ବିଷୟ ବାସନା ମୋ ଉପରେ ପ୍ରଭୁତ୍ୱ ବିସ୍ତାର କରୁଛି ଏବଂ ତାର ଦାସତ୍ୱ ସ୍ୱୀକାର କରିବାକୁ ବାଧ୍ୟ କରୁଛି । ସେତେବେଳେ ବହୁ କଷ୍ଟ ଲାଗୁଛି । କିନ୍ତୁ ତୁମ କୃପାଦ୍ୱାରା କ୍ଷଣମାତ୍ରକେ ଏହି ସମସ୍ତ ବିଷୟ କାମନା ବିନାଶ ହୋଇଯାଉଛି । ଏ ସବୁ ହେବା ସତ୍ତ୍ୱେ ମୁଁ ସର୍ବଥା ତୁମର ହୋଇପାରୁ ନାହିଁ ।

ହେ ମୋର ସର୍ବଶକ୍ତିମାନ୍ ସ୍ୱାମୀ ! ଜଣାପଡୁଛି ଯେ ମୋ ପ୍ରୟତ୍ନରେ

କିଛି ହୋଇପାରିବ ନାହିଁ। ଏବେ ତୁମେ ନିଜ ଶକ୍ତିଦ୍ୱାରା ଏ ଅଧମକୁ ହୃଦୟରେ ଧରି ରଖ ପ୍ରଭୁ। ଏହା ତ ତୁମେ ଜାଣ ଯେ ବେଳେବେଳେ ମୋ ପ୍ରାଣ ତୁମ ପାଇଁ ଛଟପଟ ହୁଏ। ବୁଦ୍ଧିର ମଧ୍ୟ ଏହା ହିଁ ନିର୍ଣ୍ଣୟ ଯେ, ତୁମର ହୋଇଯିବା ମୋ ପାଇଁ ଏକାନ୍ତ କଲ୍ୟାଣକର। ମାତ୍ର ଦୁଷ୍ଟ ମନ ମାନୁ ନାହିଁ। ମୋ ପ୍ରାଣର ଛଟପଟ ଅବସ୍ଥା ପ୍ରତି ସୁବିଗ୍ରହ କରି, ହେ ମୋର ପ୍ରଭୁ ! ତୁମ କୃପା ଦ୍ୱାରା ହିଁ ମୋତେ ରକ୍ଷା କର। ଏପରି ଯଦି ନ କରୁଛ, ତେବେ ଏହାହିଁ କର ଯେ ମୋର କେବେ କୌଣସି କାମନା ବାସନା ନ ରହୁ ଏବଂ ବାରମ୍ବାର ପ୍ରାର୍ଥନା କରି ତାହା ପୂରଣ କରିବା ପାଇଁ ମୁଁ ତୁମକୁ ବିରକ୍ତ କରିବାକୁ ଚେଷ୍ଟା ନ କରେ। ତୁମେ ଯାହା କର, ଯେପରି କର, ଯେତେବେଳେ କର, ମୋତେ ଯେକୌଣସି ଅବସ୍ଥାରେ ଯେମିତି ଇଚ୍ଛା ସେମିତି ରଖ, ମୁଁ ସେଥିରେ ସନ୍ତୁଷ୍ଟ ରହେ ଏବଂ ଏହା ଅନୁଭବ କରେ ଯେ, ଏ ସମସ୍ତ ତୁମରି କୃପା। ତୁମ ଅଜାଣତରେ କିଛି ଘଟୁ ନାହିଁ। ତୁମେ ଜାଣି-ବୁଝି ହିଁ ମୋତେ ଏପରି ସ୍ଥିତିରେ ରଖିଛ ଏବଂ ପ୍ରକୃତରେ ଏଥିରେ ବି ମଙ୍ଗଳ। ପ୍ରଭୁ ତୁମେ ଯାହା କରୁଛ ତାହା କେବଳ ମୋରି ମଙ୍ଗଳ ପାଇଁ।



**ଦିଅ ମୋତେ ପଛେ ଦାରୁଣ ଯାତନା ସହିବି ମୁଁ ମଥାପାତି।**
**କେବେ ନ କରିବି ଅଳି ତୁମ ଆଗେ ପାଇବାକୁ ସୁଖ ନିତି॥**
**ତୁମ ସୁଖେ ସୁଖୀ ତୁମ ଦୁଃଖେ ଦୁଃଖୀ ତୁମେ ହିଁ ମୋହର ଚିନ୍ତା।**
**ଦିଅ ପଛେ ଠେଲି ପାଦରେ ଦାସୀକୁ ନାହିଁ ମୋ ମନେ ଅହନ୍ତା॥**
**ତୁମ ପାଇଁ ମୋର ଆହାର ବିହାର ତୁମ ପାଇଁ ଅଙ୍ଗ ସଜ୍ଜା।**
**ତୁମ ପାଇଁ ସିନା ଧରିଛି ଜୀବନ ଆହେ ଗୋପପୁର ରାଜା॥**

ହେ ମୋର ପ୍ରାଣନାଥ !

ଲୋକେ ନିଜର ଭୋଗ ବିଳାସ ପାଇଁ, ସୁଖ ସମୃଦ୍ଧି ନିମନ୍ତେ କ'ଣ ଯେ କେତେ ତୁମ ପାଖରେ କାମନା କରୁଛନ୍ତି, ତାର ଠିକଣା ନାହିଁ। ତୁମେ ସେ ଲୋକମାନଙ୍କୁ ଦେବାକୁ ଇଚ୍ଛା କର ତ ଦେଇଦିଅ, ନ ଦେବାକୁ ଚାହିଁଲେ ଦିଅନାହିଁ। ମାତ୍ର ମୁଁ ଏସବୁ ଚାହେଁ ନା, ଏହା ତୁମେ ଜାଣ। ମୋର ଏସବୁ ବସ୍ତୁରେ କିଛି ପ୍ରୟୋଜନ ନାହିଁ ଏବଂ ଏସବୁଥିରୁ ମୋତେ ଶାନ୍ତି ମିଳେ ନାହିଁ। ମୋ ସୁଖର ସାମଗ୍ରୀ ଏକମାତ୍ର ତୁମେ, ତୁମରି ପ୍ରିୟ ମଧୁର ସ୍ମୃତି। ଯେତେବେଳେ ମୋ ମନ ଚାରିଆଡ଼େ ଭ୍ରମି ଭ୍ରମି ଫେରିଆସେ ଏବଂ ସ୍ୱସ୍ଥ ହୋଇ ସଜଳ ସତୃଷ୍ଣ ନୟନରେ ତୁମର ଅରୁଣ ଚରଣକମଳକୁ ଚାହିଁ ରହିଥାଏ, ସେତେବେଳେ ଯେଉଁ ଆନନ୍ଦ ମିଳେ, ଆହା ! ସେ ପରମାନନ୍ଦ ଅତୁଳନୀୟ। କି ମଧୁର, କେଡ଼େ ସୁନ୍ଦର, କି ସୁନିର୍ମଳ ସେ ଅପୂର୍ବ ଆନନ୍ଦ ! ତା'ପରେ ତୁମେ ଯେତେବେଳେ ତୁମର ସେଇ ଅନିର୍ବଚନୀୟ ଲୀଳା ମାଧୁରୀର ଦୃଶ୍ୟପଟ ଉନ୍ମୋଚନ କର ଏବଂ ବ୍ରଜର ସେଇ ମଧୁରାତିମଧୁର ଲୀଳା, ବ୍ରଜ ସଖାଗଣଙ୍କ ସହ ମଧୁର ଲୀଳା ତଥା ନିକୁଞ୍ଜମାଧୁରୀର ଗୋଟିଏ ଗୋଟିଏ ଦୃଶ୍ୟ ଦେଖାଇବାକୁ ଲାଗ, ସେତେବେଳେ ଆନନ୍ଦର ସୀମା ନ ଥାଏ। ତା ତୁଳନାରେ ବ୍ରହ୍ମାନନ୍ଦ ତୁଚ୍ଛ ଆଉ ନଗଣ୍ୟ ହୋଇଯାଏ । ଏ ଜଗତ, ଜାଗତିକ ପଦାର୍ଥ, ଦୁଃଖ-ସୁଖ, ଭୋଗ, ମୋକ୍ଷ କୌଣସି ବସ୍ତୁର ସତ୍ତା ମଧ୍ୟ ସେତେବେଳେ ନ ଥାଏ। ମନ ବୁଦ୍ଧି ଥିଲେ ମଧ୍ୟ ସେମାନଙ୍କର କୌଣସି ସତ୍ତା ନ ଥାଏ। ତୁମର ସେଇ ମଧୁର ତ୍ରିଭଙ୍ଗ ଭଙ୍ଗୀମ ରୂପମାଧୁରୀ ବେଳେ ବେଳେ ଦର୍ଶନ କରି ନିଜକୁ ହଜେଇ ଦିଏ ସେଇ ମୁଗ୍‌ଧ ରୂପମାଧୁରୀର ଛଟା ମଧ୍ୟରେ । ଏ ସମୟରେ ଆନନ୍ଦର ସ୍ୱରୂପ, ପରିମାଣ ସଂପର୍କରେ ଉଲ୍ଲେଖ କରିବା ସମ୍ଭବ ହୁଏନି, ନିର୍ମଳ ଆନନ୍ଦ ବ୍ୟତୀତ ଆଉ କିଛି ନ ଥାଏ ସେତେବେଳେ।

କିନ୍ତୁ ହେ ମୋର ପ୍ରାଣନାଥ ! ଏପରି ଅବସ୍ଥାରେ ପୁଣି ପରିବର୍ତ୍ତନ କାହିଁକି ହୋଇଯାଏ । କାହିଁକି ତୁମେ ତୁମର ସେଇ ମଧୁର ଦର୍ଶନକୁ ଲୁକ୍କାୟିତ କରି ଅଦୃଶ୍ୟ ହୋଇଯାଅ ? ଆଗରୁ ତ ମୋ କଥା ମାନି, ମୋ ଆଗ୍ରହ ଦେଖି ଯେତେବେଳେ ଇଚ୍ଛା ସେତେବେଳେ ରୂପ-ଲୀଳା ଗୋଟି ଗୋଟି ଖୋଲି

ଦେଉଥିଲ, ଏବେ ମୋର କେଉଁ ଘୋର ଅପରାଧରେ ମୋ ପ୍ରାର୍ଥନା ଶୁଣି ମଧ୍ୟ ନ ଶୁଣିଲାପରି ଚୁପ୍‌ଚାପ୍ ଟିକିଏ ହସିଦେଇ ରହିଯାଉଛ ? ବେଳେ ବେଳେ ବଡ଼ ବିକଳ ଲାଗେ; ତେବେ ମୋ ହାତରେ କିଛି ନାହିଁ, ମୁଁ ବା କ'ଣ କରିବି ? ସେଥର ବଡ଼ କୃପା କରିଥିଲ ତୁମେ । ଯେତେବେଳେ ମୋ ଦୟନୀୟ ଦୁର୍ଦଶା ଦେଖି ତୁମ ହୃଦୟ ତରଳିଯାଇଥିଲା, ସେତିକିବେଳେ ଅତ୍ୟନ୍ତ ଉଦାରତା ସହ ତୁମର ନବ-ନବ ଲୀଳାର ମଧୁର ଦର୍ଶନ ଲାଗ-ଲାଗ କିଛିଦିନ ପର୍ଯ୍ୟନ୍ତ କରାଉଥିଲ। ଭାବିଥିଲି, ଜୀବନର ଶେଷମୁହୂର୍ତ୍ତ ଯାଏ ଏହିପରି ଲୀଳା ଦର୍ଶନ କରୁଥିବି, ଏହାର ଆଉ ବିରତି ହେବ ନାହିଁ ।ମନରେ ଏହି ବିଶ୍ୱାସ ଆସିବାର ଅଳ୍ପ ସମୟ ପରେ ତୁମେ କାହିଁକି ତୁମର ଲୀଳାଧାରା ପ୍ରବାହରେ ବନ୍ଧ ବାନ୍ଧିଦେଲ ପ୍ରଭୁ ! ଏପରି ବଞ୍ଚିତ କରିବାର କାରଣ କ'ଣ ?

ହେ ଆନନ୍ଦ-ଲୀଳାରସ-ସୁଧା-ବିଗ୍ରହ ! ତୁମେ ତ ଜାଣ ଆଜିକାଲି ମୁଁ କେତେ ଅଶାନ୍ତ, କେତେ ଆକୁଳ ରହୁଛି ।ଏ ସମସ୍ତ ଅଶାନ୍ତି ଓ ଆକୁଳତାର କାରଣ ମଧ୍ୟ ତୁମେ ଅନ୍ତର୍ଯ୍ୟାମୀ ହୋଇଥିବାରୁ ସବୁ ଜାଣିଛ । କ'ଣ ଏଇ ଦଶା ଭୋଗୁଥିବି ? ଏପରି ଭୋଗାଇବାକୁ ଯଦି ଇଚ୍ଛା ଥିଲା, ତେବେ ତୁମର ସେଇ ରସ-ସୁଧା କାହିଁକି ପାନ କରାଉଥିଲ ? ଭକ୍ତର ରସ-ଆସ୍ୱାଦନ ଆକାଂକ୍ଷା ବଢ଼ାଇବାକୁ ତୁମେ ଏପରି କରିଥାଅ ବୋଲି କୁହାଯାଏ, କାହିଁକି ନା ବୃଦ୍ଧି ପାଇଥିବା ଆକାଂକ୍ଷା ପୂରଣ ହୋଇଗଲେ ବେଶ୍ ଆନନ୍ଦ ପ୍ରାପ୍ତ ହୋଇଥାଏ । ମାତ୍ର ହେ ମୋର ନାଥ ! ତୁମେ ଜାଣ ମୁଁ ତ ଭକ୍ତ ନୁହେଁ, ଭକ୍ତ ଚରଣରେଣୁର ଅଧିକାରୀ ବି ନୁହେଁ । ଏହା ତ ତୁମର ଅହେତୁକୀ କୃପା, ଏପରିକି ଏହା ତୁମର ଯଥେଚ୍ଛାଚାରିତା ବୋଲି କହିଲେ ବି ଅତ୍ୟୁକ୍ତି ହେବ ନାହିଁ; କାରଣ ମୋ ପରି ସର୍ବଥା ଅନଧିକାରୀ ବ୍ୟକ୍ତିଟିକୁ ତୁମର ଗୁହ୍ୟତମ ଲୀଳା-ମାଧୁରୀ ଦର୍ଶନ କରିବାର ସୁଯୋଗ ଦେଇଥିଲ । ତେବେ, ଯଦି ମୋତେ ଦର୍ଶନ କରାଇଥିଲ, ତେବେ ମୁଁ ଅନଧିକାରୀ କାହିଁକି ହେବି ?

ଯାହା ବି ହେଉ, ଏବେ ପୁନର୍ବାର କୃପା କର ପ୍ରଭୁ ! କୃପା ତ ତୁମର ନିତ୍ୟ ବିଦ୍ୟମାନ। କୃପାର ସାକ୍ଷାତକାର କରାଇ ଏ ବନ୍ଧ ଭାଙ୍ଗିଦିଅ । ଯଦି କିଛି ଅପରାଧ ହୋଇଛି କହିଦିଅ ଏବଂ ପୁନର୍ବାର ଯେପରି ଅପରାଧୀ ନ ହୁଏ, ସେ ବ୍ୟବସ୍ଥା ବି ତୁମକୁ କରିବାକୁ ପଡ଼ିବ। ମୁଁ ତ ପଙ୍ଗୁଟିଏ, କ'ଣ ବା କରିପାରିବି ?



(୧୯)

ପ୍ରିୟତମ !

ତୁମେ ତ ମୋ ଅନ୍ତରର ପ୍ରତିଟି କଥା ଜାଣ । ତୁମେ ପରା ମୋର ଅନ୍ତରଙ୍ଗ ପ୍ରିୟତମ ! କହିଲ, ମୁଁ ତୁମଠାରୁ ମୋ ନିଜ ପାଇଁ କିଛି ମାଗୁଛି ? ମୋ ସୁଖସ୍ୱରୂପ ତ କେବଳ ତୁମେ । ହେ ହୃଦୟେଶ୍ୱର ! ତୁମ ପାଖରେ କ'ଣ ବା ଲୁଚେଇଛି ? ମୋ ହୃଦୟର ଅନ୍ତରତମ କାମନା ଏବଂ ଏକମାତ୍ର କାମନା ହେଉଛି—ମୁଁ ସଦାସର୍ବଦା ତୁମ ସାନ୍ନିଧ୍ୟ ପାଆନ୍ତି କି! ସବୁକିଛି ଛାଡ଼ି ନିତ୍ୟ ନିରନ୍ତର ତୁମ ଚାକିରୀରେ ମୋ ଜୀବନର ପ୍ରତିଟି ମୁହୂର୍ତ୍ତ ଲଗାଇ ଦିଅନ୍ତି । ମୋର କ'ଣ ଏହା ହିଁ ମନୋବାଞ୍ଛା ନୁହେଁ ? ଯଦି ଏହା ସତ, ତେବେ ଏପରି ବିଡ଼ମ୍ବନା କାହିଁକି ? ମୁଁ କିଛି ବୁଝିପାରୁନାହିଁ । ହେ ନାଥ ! ଏ କ'ଣ ମନର ପ୍ରବଞ୍ଚନା ? ଏ କ'ଣ ଆତ୍ମ ପ୍ରତାରଣା ? ଏପରି ତ ହେବା କଥା ନୁହେଁ ! ତୁମ ପାଇଁ ମନ ସର୍ବଦା ବ୍ୟାକୁଳ, ବାରମ୍ବାର ତୁମରି ସ୍ମୃତି ଉଦୟ ହେଉଛି ଏବଂ ମୋ ଆଖି ଛଳଛଳ ହୋଇ ଉଠୁଛି, କିଏ କାଳେ ଦେଖିଦେବ ସେଥିପାଇଁ ମୁହଁ ବୁଲାଇ ଆଖିଲୁହ ପୋଛି ଦେଉଛି । ତୁମେ ତ ସବୁବେଳେ ଏସବୁ ଦେଖୁଛ ।

ମନ କହୁଛି, ଆଠପ୍ରହର ତୁମ ଶ୍ରୀଚରଣ ତଳେ ବସିରହି, ନିରନ୍ତର ତୁମ ରୂପସୁଧା-ମାଧୁରୀ ପାନ କରି ଚାଲନ୍ତି । କିନ୍ତୁ ଏହା ହୋଇପାରୁନାହିଁ କାହିଁକି ? କାହିଁକି ସବୁକିଛି ଛାଡ଼ି, ସମସ୍ତଙ୍କଠାରୁ ସଂପର୍କ ତୁଟାଇ ତୁମ ସେବାରେ ହିଁ ନିଯୁକ୍ତ ନ ହେଉଛି ? ମୋର କିଛି ଭ୍ରମ ହୋଇ ଯାଉଛି ବୋଲି ଜଣା ପଡୁଛି । ତୁମ ନାଁରେ ମୋର କିଛି ଆତ୍ମସୁଖର ବାସନା ବୋଧେ ମନରେ ଲୁଚି-ଛପି ରହିଯାଇଛି ଏବଂ ତାହା ହିଁ ମୋତେ ପ୍ରତାରିତ କରି ଚାଲିଛି । କେବଳ ମନର ଉପର ଠାଉରିଆ ଲାଳସାରେ କ'ଣ ଲାଭ ଅଛି ? ଯଦି ତୀବ୍ର ଅନନ୍ୟ ଲାଳସା ଥାଆନ୍ତା, ତେବେ ତୁମ ମାଧୁରୀର ନିତ୍ୟ ଆସ୍ୱାଦନରୁ ମୁଁ କାହିଁକି ବଞ୍ଚିତ ରହନ୍ତି ? ସତ କଥା ମୋ ରତି ଅସତୀ; ମୋ ପ୍ରୀତି ବ୍ୟଭିଚାରିଣୀ; ମୋ ମତି ଅବ୍ୟବସାୟାତ୍ମିକା । ମାତ୍ର ହେ ନାଥ ! ତୁମରି ଅହେତୁକୀ କୃପା ଦ୍ୱାରା ହିଁ ସେମାନେ ସୁଧୁରିବେ ।

ତୁମ କୃପାରେ ଯଦି ମୂକ ବାଗ୍ମିକ ହେଇପାରେ, ପଙ୍ଗୁ ପର୍ବତ ଲଙ୍ଘନ କରିପାରେ, ତେବେ ସେଇ କୃପା ଦ୍ୱାରା ମୋର ଏଇ ବାସନା ଶୁଦ୍ଧ ହୋଇ ପୂର୍ଣ୍ଣ ନ ହେବ କାହିଁକି ?

ମୁଁ ଯେପରି ଅଟେ, ଯାହାକିଛି ଅଟେ, ସେଇ ଅବସ୍ଥାରେ ତୁମ ସାମ୍ନାରେ ଅଛି । ମୋ ତ୍ରୁଟି, ଯାହା ସଂପର୍କରେ ମୋର କିଛି ବୋଧ ନାହିଁ, ତାହା ତୁମ ସମ୍ମୁଖରେ ପ୍ରତ୍ୟକ୍ଷ । ଏସବୁ ତ୍ରୁଟି ବିଚ୍ୟୁତିର ସଂଶୋଧନ ତୁମେ କରିପାରିବ । ମୁଁ ତ ମୋ ତ୍ରୁଟିମାନଙ୍କ ଭିତରୁ ଅନେକଙ୍କୁ ଜାଣି ପାରୁନି, ଚିହ୍ନି ପାରୁନି । ତୁମ ମାଧୁରୀ ଆସ୍ୱାଦନ ପାଇଁ ମୋ ମନର ଅଭିଳାଷ ଯେହେତୁ ପୂର୍ଣ୍ଣ ହୋଇ ପାରୁନାହିଁ, ସେଥିପାଇଁ ମୋର ଅବଶ୍ୟ ତ୍ରୁଟି ରହିଛି ବୋଲି ବିଶ୍ୱାସ ହେଉଛି ।

ହେ ମୋର ପ୍ରାଣର ପ୍ରାଣ ! ନିତ୍ୟ ମଧୁର ପ୍ରିୟତମ ! ଯାହାକଛି ମୋଠାରେ ଅଭାବ ଦେଖୁଛ, ତାହା ତୁମ କୃପାଦୃଷ୍ଟିରେ ପରିପୂର୍ଣ୍ଣ କରିଦିଅ । ତୁମ ରସ-ସମୁଦ୍ରରେ ବୁଡ଼ାଇରଖି ସବୁଦିନ ପାଇଁ ନିଶ୍ଚିନ୍ତ କରିଦିଅ ।



# (୨୦)

ଲୀଳାମୟ !

ତୁମ ଲୀଳାରହସ୍ୟ କିଏ ଜାଣିପାରିବ ? କେବେ ତୁମେ କେଉଁ କ୍ରୀଡ଼ାରେ ରତ ରହୁଛ ଏବଂ ଏହାଦ୍ୱାରା ଜଗତରେ କିପରି ଭାବେ ଅଚିନ୍ତ୍ୟ ପରିବର୍ତ୍ତନ ହୋଇ ଯାଉଛି, ଏକଥା କେହି ବି ଜାଣିପାରିବେ ନାହିଁ । ଆଜି ଜଗତରେ ଯାହାକିଛି ଘଟିଯାଉଛି, ତାହାର କ'ଣ ପରିଣାମ ହେବ ଏବଂ ଏହି ଖେଳର କେବେ ବା ଅପର ଦୃଶ୍ୟ ଦେଖାଯିବ, କେହି କହି ପାରିବେ ନାହିଁ । କେତେ ପରିବର୍ତ୍ତନ ଘଟିଗଲାଣି ! ବିଦ୍ୱାନ୍ ବୋଲାଉଥିବା ବ୍ୟକ୍ତିମାନେ ତୁମକୁ ସ୍ୱୀକାର କରିବାକୁ ମଧ୍ୟ ସଙ୍କୋଚ କରନ୍ତି । କେତେକ ତଥାକଥିତ ଉଚ୍ଚ ଶିକ୍ଷିତ ଲୋକେ ତୁମ ନାମ ପୋଛି ଦେବାକୁ କମର କସି ବାହାରିଛନ୍ତି । ଏଣେ ଅବିଶ୍ୱାସୀ ପୂଜାରୀ ତୁମ ନାଁରେ ପ୍ରାୟ ଲୋକଙ୍କୁ ଠକିବାରେ ବ୍ୟସ୍ତ । ମନ୍ଦିର, ମଠ, ମସଜିଦ୍, ଆଶ୍ରମ, ଗୀର୍ଜା, ବିହାର, ତୀର୍ଥ ଆଦି କେଉଁଥିରେ ବି ଆଜି ପୂର୍ବପରି ସରଳ ବିଶ୍ୱାସ ନାହିଁ । ବାକ୍‌ଚାତୁରୀ କରୁଥିବା ବ୍ୟକ୍ତି ଅନ୍ୟମାନଙ୍କୁ ସିଦ୍ଧାନ୍ତ ଶୁଣାଉଛି, ଅଥଚ ନିଜେ ସନ୍ଦେହରେ ପରିପୂର୍ଣ୍ଣ । ଉପଦେଶକ, ଆଚାର୍ଯ୍ୟ, ସମ୍ପାଦକ, କବି ଏବଂ ବକ୍ତାମାନେ ଲୋକଙ୍କୁ ଈଶ୍ୱର, ଧର୍ମ, କର୍ମ, ଦେଶସେବା ଆଦି କାର୍ଯ୍ୟ କରିବାକୁ କହୁଛନ୍ତି, ଅଥଚ ଆନ୍ତରିକ ଭାବେ ସେ ସମସ୍ତ କାର୍ଯ୍ୟର ସାମାନ୍ୟତମ ଅଂଶ ମଧ୍ୟ ନିଜେ କରିବାକୁ ଆଗ୍ରହୀ ନୁହଁନ୍ତି, ବରଂ ଭିତରେ ଭିତରେ ବିପରୀତ ଆଚରଣ କରୁଛନ୍ତି । ତୁଳସୀ ଦାସ, ସୁରଦାସ, ଜ୍ଞାନଦେବ, ଏକନାଥ, କବୀର, ପଲ୍‌ଟୁ, ମୀରାବାଈ, ସହଜୋବାଈ ପ୍ରଭୃତି ମହାନ୍ ଆତ୍ମାମାନଙ୍କ ରଚିତ କବିତା ତଥା ଭାବଧାରାରୁ ବଳି ଅଧିକ ଭାବାତ୍ମକ କବିତା ଓ ଚିନ୍ତାଧାରାର ସ୍ୱରୂପ ଆଜି ସମ୍ମୁଖରେ ଦେଖିବାକୁ ମିଳୁଛି । ମାତ୍ର ସେହି ସନ୍ଥମାନଙ୍କ ସହୃଦୟତା ଆଜି ଖୋଜିଲେ କେଉଁଠି ମିଳିବା ସମ୍ଭବ ନୁହେଁ । ଅଥଚ ଆମର ଉନ୍ନତି ହୋଇଛି ବୋଲି ସର୍ବତ୍ର ପ୍ରଚାର କରାଯାଉଛି । ଏହାକୁ କ୍ରମିକ ବିକାଶ ବୋଲି କୁହାଯାଉଛି । ଏହି

ଉନ୍ନତି ବା ବିକାଶ ଦୈବୀ ନା ଆସୁରୀ, ଆତ୍ମାର ନା ଅନାତ୍ମାର, ଏ ନିର୍ଣ୍ଣୟ କିଏ ବା କରିବ ? ତେବେ ଏହା ଅବଶ୍ୟ କୁହା ଯାଇପାରିବ ଯେ ଏ ସବୁ ତୁମରି ଲୀଳା, ତୁମ ଅଭିନୟର ଗୋଟିଏ ସିନ୍ ।

ଖେଳ ! ଖୁବ୍ ଖେଳ, ହେ ଖେଳାଳି ! ସମସ୍ତଙ୍କୁ ନିଜ ସାଥିରେ ବି ଖେଳାଅ । ଏହା ହିଁ ତୁମର କାର୍ଯ୍ୟ । ନିଜେ ସବୁକିଛି ହୋଇଯାଇ, ନିଜେ ହିଁ ସଦା-ସର୍ବଦା ସବୁକିଛିକୁ ସାଙ୍ଗରେ ଧରି, ସବୁକିଛି ସାଥିରେ ନେଇ ତୁମେ ଖେଳିଥାଅ ଏବଂ ସେଇ ସବୁକିଛିରୁ ଅଲଗା ହୋଇ ଯାଇ ତୁମେ ଖେଳ ମଧ୍ୟ ଦେଖିଥାଅ । ତୁମ ଖେଳରେ କାହିଁକି ବିରାମ ହେବ ? ଚାଲୁ ! ନୂଆ ନୂଆ ପରଦା ପଡୁ, ସିନ୍ ପରେ ସିନ୍ ବଦଳୁ, ତୁମ ଲୀଳାପ୍ରବାହ ସଦା ଅବିଚ୍ଛିନ୍ନ ଭାବେ ଚାଲୁ । ଏଥିରେ ଆମ୍ଭର ଆପତ୍ତି କରିବାର କ'ଣ ଅଛି ? ତୁମେ ଯେତେବେଳ ଯାଏ ଇଚ୍ଛା କରୁଛ ମୋତେ ତୁମ ସଂକଳ୍ପରୁ ଅଲଗା କଳ୍ପିତ କରି ମୋ ସହିତ ଖେଳୁଥାଅ । ମାତ୍ର କୃପା କରି ଏପରି ମୋ ଆଖି ଖୋଲିଦିଅ, ଯେପରି ତୁମ ସଂକଳ୍ପିତ ଆଧାର ଉପରେ ସ୍ଥିର ହୋଇରହି, ନିଜର ଭିନ୍ନ ଅସ୍ତିତ୍ୱ ବ୍ୟତୀତ ବାକି ସବୁ ଖେଳରେ, ଖେଳଣାରେ ସବୁଥିରେ କେବଳ ତୁମରି ଛବି ଦେଖୁଥିବି । ତୁମେ ଆଉ ମୁଁ ଦୁହେଁ ହିଁ ରହିଯିବା, ତୁମକୁ ମୁଁ ଉପଲବ୍ଧି କରୁଥିବି, ଆଉ ମୋତେ ତୁମେ ମଧ୍ୟ । ତୁମେ ମୋତେ ଦେଖୁଥିବ ଏବଂ ମୁଁ ତୁମକୁ ଦେଖୁଥିବି । ବେଶ୍, ଏତିକି କେବଳ ପ୍ରାର୍ଥନା ।



(୨୧)

ହେ ମୋର ଅନ୍ତରାତ୍ମା !

ମୁଁ ଏହା ଅନୁଭବ କରୁଛି ଯେ ମୋ ଦ୍ୱାରା ଯାହା କିଛି ହେଉଛି, ସେ ସବୁଥିରେ ତୁମରି ମଙ୍ଗଳମୟ କରସ୍ପର୍ଶ ରହିଛି ଏବଂ ମୁଁ ଯାହାକିଛି ଦେଖୁଛି, ଶୁଣୁଛି, ବୁଝୁଛି ଏବଂ ଗ୍ରହଣ କରୁଛି, ସେ ସବୁଥିରେ ତୁମରି ମଙ୍ଗଳ ବିଧାନ କାର୍ଯ୍ୟ କରୁଛି । ଯେତେବେଳେ ଏହାର ପ୍ରତ୍ୟକ୍ଷ ଅନୁଭବ ହେଉଛି, ସେତେବେଳେ ଅଭିମାନ, ଅହଙ୍କାର, ମମତା ଏବଂ ଆସକ୍ତି ରହୁନାହିଁ ଏବଂ ହର୍ଷ-ଶୋକ, ରାଗ-ଦ୍ୱେଷ, ଆକାଂକ୍ଷା ଓ ଅପେକ୍ଷାର ଦ୍ୱନ୍ଦ୍ୱ ରହୁନାହିଁ । କେବଳ ରହୁଛି ତୁମର ଆତ୍ମୀୟତା, ତୁମରି ସୌହାର୍ଦ୍ଦ୍ୟ ଓ ତୁମରି ପ୍ରେମର ଦିବ୍ୟ ସାକ୍ଷାତ୍କାର । ସମଗ୍ର କାର୍ଯ୍ୟରେ, ସମସ୍ତ ଅନୁଭୂତିରେ ଏବଂ ସାରା ଜଗତରେ ସେ ସମୟରେ ତୁମରି ମଧୁର ଦିବ୍ୟତା ପ୍ରସାରିତ ହେବା ଦର୍ଶନ କରୁଛି । ସବୁ ଦିଗରୁ ସର୍ବଥା ମୁଁ ଗ୍ୱହେଁ ଏହିପରି ସ୍ଥିତି ସବୁବେଳେ ରହନ୍ତା । କାରଣ ଏହା ହିଁ ସତ୍ୟ ଯେ ଜଗତ ତୁମ ଖେଳଘର ଏବଂ ଏଠାରେ ଖେଳୁଆଡ଼ମାନଙ୍କ ସହିତ ତୁମେ ଅଭିନ୍ନ । ତୁମେ ହିଁ ଖେଳର ସାମଗ୍ରୀ, ତୁମେ ହିଁ ଖେଳ ଏବଂ ତୁମେ ହିଁ ଖେଳାଳି ।

ଏ ପ୍ରକାର ସ୍ଥିତିରେ ଜଗତର କୌଣସି କାର୍ଯ୍ୟ ଭାର ବା ବନ୍ଧନ ପରି ଲାଗେ ନାହିଁ । ତୁମରି ସତ୍ତା, ତୁମରି ସାମଗ୍ରୀ, ତୁମରି ହିଁ ପୂଜା ଏବଂ ତୁମେ ପୂଜାର ପ୍ରେରକ । ସେ ସମୟରେ ଆନନ୍ଦର ଜାତି ମଧ୍ୟ ଦିବ୍ୟ ହୋଇଯାଏ; କାରଣ ଏହା ତୁମଠାରୁ ପ୍ରାପ୍ତ ବୋଲି ଆନନ୍ଦମୟ ହୁଏ । ହେ ମୋର ଅନ୍ତରାତ୍ମନ୍ ! ମୋର ପ୍ରାର୍ଥନା, ଏହି ସ୍ଥିତି ନିରନ୍ତର ରହିଥାଉ, ମୋ ଦ୍ୱାରା ଜଗତରେ ଯାହା କିଛି ବି ହେଉଛି, ତାହା କେବଳ ତୁମରି କାର୍ଯ୍ୟ ଓ ତୁମରି ପୂଜା ହେଉ ଏବଂ ଅଭିମାନ-ଅହଂକାର ରହିତ ହୋଇ ମୁଁ ଏହା ଉପଲବ୍ଧି ବି କରେ, ଯାହାଫଳରେ ତୁମରି ଅଚିନ୍ତ୍ୟାନନ୍ତ ମାଧୁର୍ଯ୍ୟର ଦିବ୍ୟ ଆସ୍ୱାଦନ ମୁଁ ପାଇପାରିବି ।

ନାଥ ! ମୁଁ ତୁମର ବୋଲି ତୁମେ ସ୍ୱୀକାର କରି ସାରିଛ, ମୁଁ ମଧ୍ୟ ମାନି ନେଇଛି । ଏ ସବୁ ସତ୍ତ୍ୱେ କେବେ କେବେ ଏଥିରେ ବ୍ୟତିକ୍ରମ

କାହିଁକି ଦେଖାଯାଉଛି ? ଜଣାପଡୁଛି, ଏ ମଧ୍ୟ ତୁମରି ଖେଳ । ରସାସ୍ୱାଦନ ବୃଦ୍ଧି ପାଇଁ ତୁମେ ହୁଏତ ଏପରି କରିଥାଇପାର । ଅବଶ୍ୟ ମୋତେ ଏହା ଜଣାପଡ଼େ । ଯେତେବେଳେ ମୁଁ କୌଣସି ଭ୍ରମାତ୍ମକ ପରିସ୍ଥିତିରେ ପଡ଼ି ତା'ପରେ ଯଥାର୍ଥ ସ୍ଥିତିକୁ ଆସେ, ସେତେବେଳେ ବିଶେଷ ଆନନ୍ଦ ଅନୁଭୂତ ହୁଏ; ଯେପରି କି ହଜେଇ ଦେଇଥିବା କୌଣସି ଅମୂଲ୍ୟରତ୍ନ ମିଳିଯିବା ପରେ ବିଶେଷ ଆନନ୍ଦ ଜାତ ହୋଇଥାଏ । ସେତେବେଳେ ଏକ ଅପୂର୍ବ ଉଲ୍ଲାସ-ସାଗରରେ ନବୀନ ତରଙ୍ଗ ଉଛୁଳି ଉଠେ ।

ମାତ୍ର ହେ ପ୍ରାଣ ପ୍ରିୟତମ ! ମୁଁ ଗ୍ରହେଁ ଯେ ନିରନ୍ତର ଯେପରି ଯଥାର୍ଥ ସ୍ଥିତିରେ ରହିପାରିବି ଏବଂ ସେଥିରେ ଉତ୍ତରୋତ୍ତର ନୂଆ ନୂଆ ଉଲ୍ଲାସ ଲହରୀ ଉଠୁଥିବ ଏବଂ ତାହା ବଢୁଥିବ । ଏହା ଅସତ୍ୟ ହେବାର କିଛି କାରଣ ବି ନାହିଁ; କାରଣ ତୁମେ ଯେତେବେଳେ ନିତ୍ୟ ନବୀନ, ନିତ୍ୟ ନବୀନ ଆନନ୍ଦମୟ, ନିତ୍ୟ ନବୀନ ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟର ଅପାର ପାରାବାର, ତେବେ ତୁମକୁ ଏବଂ ତୁମ ମଙ୍ଗଳମୟ ବିଧାନମାନଙ୍କୁ ଦର୍ଶନ କରୁଥିବା ବ୍ୟକ୍ତିର ହୃଦୟରେ ନିତ୍ୟ ନୂତନ ଆନନ୍ଦାନୁଭୂତି ହେବା କେଉଁ ବିଚିତ୍ର କଥା ଅବା !

ହେ ମୋର ପ୍ରାଣର ପ୍ରାଣ ! ତୁମେ ଗ୍ରହିଁଲେ ସବୁକିଛି ହୋଇପାରିବ । ମୋ ଦ୍ୱାରା କିଛି ହେବା ସମ୍ଭବ ନୁହେଁ । ତୁମେ ସ୍ୱୟଂ ଏପରି ଅପରୂପ ପରିସ୍ଥିତି ନିର୍ମାଣ କରିଦିଅ, ଯେଉଁଥିରେ ଅନ୍ୟ ସାରା ପରିସ୍ଥିତି ସମାବିଷ୍ଟ ହୋଇଯାଉ ଏବଂ ମୋତେ ତୁମରି ମଧୁର ତଥା ଦିବ୍ୟ ସ୍ୱରୂପ ତଥା ତୁମପରି ଅକର୍ତ୍ତାଙ୍କର ସର୍ବକର୍ତ୍ତୃତ୍ୱର ଦର୍ଶନ ଲାଭ ହେଉଥାଉ ।

**ହରିଃ ଓଁ ତତ୍ ସତ୍**



**ଅମୃତ, ସ୍ୱରଗ, ଅମର ପଦକୁ କରୁନାହିଁ କେବେ ବାଞ୍ଛା ।**
**ଅବିଚ୍ଛିନ୍ନ ଥିବି ଅଚ୍ୟୁତ ଚରଣେ ଏଇ ମୋର ଶେଷ ଇଚ୍ଛା ॥**

**॥ ଜୟ ଶ୍ରୀଚନ୍ଦ୍ରମୌଳି ॥**